## ମହାନ୍ ସଂଗ୍ରାମୀ

# ବକ୍ସି ଜଗବନ୍ଧୁ

ଡକ୍ଟର ପ୍ରଫୁଲ୍ଲ କୁମାର ପଟ୍ଟନାୟକ



ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

MAHAN SANGRAMEE
BAKSI JAGABANDHU
by Dr. Prafulla Kumar Pattnaik
Published by Vidyapuri, Balubazar, Cuttack 753 002

ISBN 978-81-7411-799-1

ପ୍ରଥମପ୍ରକାଶ ଜାନୁଆରୀ ୨୦୧୧
ଦ୍ୱିତୀୟମୁଦ୍ରଣ ଜାନୁଆରୀ ୨୦୧୩
ତୃତୀୟମୁଦ୍ରଣ ସେପ୍ଟେମ୍ବର ୨୦୧୬

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ମୁଦ୍ରଣ
ବିଶ୍ୱନାଥ ଏଣ୍ଟରପ୍ରାଇଜେସ୍
ପ୍ଲଟ୍ ନଂ 8/E ଚନ୍ଦକା ଇଣ୍ଡଷ୍ଟ୍ରିଆଲ ଏରିଆ
ଭୁବନେଶ୍ୱର ୭୫୧ ୦୨୪

ମୂଲ୍ୟ ଟ ୬୦-୦୦

# ଉପକ୍ରମଣିକା

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେତେବେଳେ ସାରା ଦେଶରେ ବ୍ରିଟିଶ ସାମ୍ରାଜ୍ୟବାଦ ପ୍ରତିଷ୍ଠିତ ହୋଇଥିଲା – ଯେଉଁ ସାମ୍ରାଜ୍ୟବାଦକୁ କୁହାଯାଏ 'The Sun Never Sets' ଅର୍ଥାତ୍ ସୂର୍ଯ୍ୟ ଅସ୍ତ ହୁଏ ନାହିଁ । ସେତେବେଳେ ରାଜ୍ୟକୁ ରକ୍ଷା କରିବାପାଇଁ ଯେଉଁମାନେ ପ୍ରବଳ ପରାକ୍ରମୀ ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ କରିବାକୁ ଆଗେଇ ଆସିଥିଲେ, ସେମାନଙ୍କ ମଧ୍ୟରେ ବକ୍‌ସି ଜଗବନ୍ଧୁ ହେଉଛନ୍ତି ଅଗ୍ରଗଣ୍ୟ । ତାଙ୍କର ସାଙ୍ଗଠନିକ ଶକ୍ତି, ଦେଶପ୍ରେମ ତଥା ତ୍ୟାଗ ଓଡ଼ିଶା ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ହୋଇ ରହିଅଛି ।

# ସୂଚୀ


୧. ପ୍ରଥମ ପରିଚ୍ଛେଦ
ବଂଶ ପରିଚୟ, ବିବାହ, ବକ୍ସିପଦରେ ନିଯୁକ୍ତିର ବିରୋଧ .. ୧
୨. ଦ୍ୱିତୀୟ ପରିଚ୍ଛେଦ
ବାଙ୍କି ଓ ରଣପୁର ଯୁଦ୍ଧ ୪
୩. ତୃତୀୟ ପରିଚ୍ଛେଦ
ଇଂରେଜଙ୍କୁ ବିରୋଧ ୬
୪. ଚତୁର୍ଥ ପରିଚ୍ଛେଦ
ବ୍ରିଟିଶ ଶାସନର କୁପରିଣାମ ୮
୫. ପଞ୍ଚମ ପରିଚ୍ଛେଦ
ଜଗବନ୍ଧୁଙ୍କ ଦୁରବସ୍ଥା ୨୪
୬. ଷଷ୍ଠ ପରିଚ୍ଛେଦ
ପ୍ରସ୍ତୁତି ୨୯
୭. ସପ୍ତମ ପରିଚ୍ଛେଦ
ସଂଗ୍ରାମ ଆରମ୍ଭ ୩୪
୮. ଅଷ୍ଟମ ପରିଚ୍ଛେଦ
ସାମରିକ କାର୍ଯ୍ୟାନୁଷ୍ଠାନ ୪୫
୯. ନବମ ପରିଚ୍ଛେଦ
ପୁରସ୍କାର ଘୋଷଣା, ଗିରଫ ଓ ଆତ୍ମସମର୍ପଣ ୫୨
୧୦. ଦଶମ ପରିଚ୍ଛେଦ
ବିଚାର ଓ ଦଣ୍ଡ ୬୦
୧୧. ଏକାଦଶ ପରିଚ୍ଛେଦ
ପୁରସ୍କାର ପ୍ରଦାନ ୬୬
୧୨. ଦ୍ୱାଦଶ ପରିଚ୍ଛେଦ
ଗଡ଼ିଲା ଯୁଦ୍ଧ ୬୮
୧୩. ତ୍ରୟୋଦଶ ପରିଚ୍ଛେଦ
ଗିରଫ ଉଦ୍ୟମ ୭୨
୧୪. ଚତୁର୍ଦ୍ଦଶ ପରିଚ୍ଛେଦ
ଆପୋସୀ ରାଜିନାମା ୭୯
୧୫. ପଞ୍ଚଦଶ ପରିଚ୍ଛେଦ
୧୮୧୭ ସଂଗ୍ରାମର ସ୍ୱରୂପ ୮୫
୧୬. ଷୋଡ଼ଶ ପରିଚ୍ଛେଦ
ମୂଲ୍ୟାୟନ ୮୮

ପ୍ରଥମ ପରିଚ୍ଛେଦ

# ବଂଶ ପରିଚୟ

୧୫୬୮ ଖ୍ରୀଷ୍ଟାବ୍ଦରେ ଖୋରଧା ୧୧୦ଟି ଗଡ଼ରେ ବିଭକ୍ତ ଥିଲା । ତନ୍ମଧ୍ୟରୁ ଗଡ଼ରୋଡ଼ଙ୍ଗ ଥିଲା ଅନ୍ୟତମ । ମୋଗଲ୍ ଶାସନ ସମୟରେ ଏହା ଗଡ଼ର ମାନ୍ୟତା ଲାଭ କରିଥିବା ଜଣାଯାଏ । ପ୍ରାଚୀନ ରୋଡ଼ଙ୍ଗଗଡ଼ ଜଗ୍‌ବନ୍ଧୁଙ୍କ ସମୟରେ ନିର୍ମିତ ରୋଡ଼ଙ୍ଗଗଡ଼ର ପୂର୍ବ ଦିଗରେ ଅବସ୍ଥିତ ଥିଲା ।

ବିଶିଷ୍ଟ ଐତିହାସିକ ଡଃ ଭବାନୀଚରଣ ରାୟଙ୍କ ମତରେ ବକ୍ସି ଜଗବନ୍ଧୁ ପ୍ରାୟ ୧୭୬୯-୭୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ମରହଟ୍ଟାମାନେ ଓଡ଼ିଶା ଶାସନ କରୁଥିଲେ । ତତ୍କାଳୀନ ଖୋରଧାର ରାଜା ଥିଲେ ବୀରକିଶୋର ଦେବ ।

ଜନଶ୍ରୁତି ଅନୁସାରେ ଜଗବନ୍ଧୁ ତତ୍କାଳୀନ ବକ୍ସି ଗୋପୀନାଥଙ୍କର ପୋଷ୍ୟପୁତ୍ର ଥିଲେ । ସେ ଖୋରଧା ହଳଦିଆଗଡ଼ ଭଞ୍ଜବଂଶରୁ ପୋଷ୍ୟପୁତ୍ର ହୋଇ ଆସିଥିଲେ । ଜଗବନ୍ଧୁଙ୍କର ପୂରା ନାମ ଥିଲା ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ । 'ବିଦ୍ୟାଧର ମହାପାତ୍ର' ଗୋଟିଏ ରାଜକୀୟ ଉପାଧି ଥିଲା । ଗଡ଼ରୋଡ଼ଙ୍ଗ ଗଡ଼ାଧୀଶ ରାଜବଂଶଜ ଥିବାରୁ ଏହି ପଦବୀ ବ୍ୟବହାର କରୁଥିଲେ । ଜଗବନ୍ଧୁ ଗଜପତିମାନଙ୍କ ରାଜଦରବାରରେ ପଦସ୍ଥ ବ୍ୟକ୍ତି ଥିଲେ । ଗଜପତି ବୀରକିଶୋର ଦେବ ତାଙ୍କୁ 'ବକ୍ସି' ପଦବୀ ଦେଇଥିବା ଅନୁମାନ କରାଯାଏ । ଏହି ପଦବୀ ନାମର ଆଗରେ ବ୍ୟବହାର କରାଯାଉଥିଲା । ଜଗବନ୍ଧୁ 'ବକ୍ସି ଜଗବନ୍ଧୁ' ନାମରେ ପରିଚିତ ଥିଲେ ।

ଜଗବନ୍ଧୁ ଦେଖିବାକୁ ସୁନ୍ଦର ଥିଲେ । ମଧୁସୂଦନ ବିପ୍ର ରଚିତ 'ଫିରିଙ୍ଗୀ କଳି ଭାରତ' ରେ ଏହା ବର୍ଣ୍ଣିତ, ଯଥା –

''ସୁରବର ସୁନ୍ଦର ଯେ ବକ୍ସି ବିଦ୍ୟାଧର
ନାମ ଜଗବନ୍ଧୁ ଯେ ଥାଟରେ ସରକାର ।''

ଜଗବନ୍ଧୁଙ୍କର ଉତ୍ତମ ସ୍ୱାସ୍ଥ୍ୟ ଥିଲା । ପ୍ରତ୍ୟହ ସେ ବ୍ୟାୟାମ କରୁଥିଲେ । କୁସ୍ତି କସରତ, ଅଶ୍ୱାରୋହଣ, ଭାର ଉତ୍ତୋଳନ ପ୍ରଭୃତି କରୁଥିଲେ । ଗ୍ରାମରେ ଥିବା ଆଖଡ଼ାଗୃହରେ ସମରାଭ୍ୟାସ କରୁଥିଲେ । ଖଣ୍ଡାଯୁଦ୍ଧରେ ସେ ନିପୁଣ ଥିବାର ଜଣାଯାଏ ।

ବକ୍ସିଙ୍କର ଦୈହିକ ଶକ୍ତି ଅମାପ ଥିଲା । ସେ ସମ୍ପର୍କରେ ଏକ କିମ୍ବଦନ୍ତୀ ୧୮୧୭ ବିଦ୍ରୋହ ସମ୍ପର୍କରେ ତଦନ୍ତ କରୁଥିବା ଇଓ୍ୱାର ସାହେବ ତାଙ୍କ ପ୍ରଦତ୍ତ ରିପୋର୍ଟରେ ଉଲ୍ଲେଖ କରିଛନ୍ତି । ଏହି କିମ୍ବଦନ୍ତୀ ଅନୁଯାୟୀ ବକ୍ସିଙ୍କ ପିଠିରେ ଗୋଟିଏ ଯାଦୁ ଥିଲା । ସେ ୧୦ ଫୁଟ ଲମ୍ବ ୫ ଫୁଟ ଓସାର ଓ ୨ ଫୁଟ ଉଚ୍ଚା ଗୋଟିଏ ମୁଗୁନି ପଥରକୁ ଭୂଇଁ ଉପରେ ସଳଖି ନିଜ ପିଠି ଉପରେ ଡେରି ରଖୁଥିଲେ ଓ ତାହା ଦେହରେ ନିଜ ପିଠି ଘଷି ଘଷି ଯାଦୁର କଣ୍ଡୁ ମାରୁଥିଲେ । ସେ ପଥର ଖଣ୍ଡିକ ଖୋରଧାର କୌଣସି ପୁରୁଣା ମନ୍ଦିର ସମ୍ମୁଖରେ ପଡ଼ିଥିବାର ଦେଖିଥିଲେ ବୋଲି ସେ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଥିଲେ ।

ଏକ ଜନଶ୍ରୁତି ଅନୁଯାୟୀ ଜଗବନ୍ଧୁଙ୍କର ଘର ଆଗରେ ଗୋଟିଏ ବଡ଼ ପଥରକୁ ଜଗବନ୍ଧୁ ଗୋଡ଼ରେ ଗଡ଼ାଇ ଗଡ଼ାଇ ପୋଖରୀ କୂଳକୁ ନେଉଥିଲେ । ଗାଧୋଇ ସାରିଲା ପରେ ସେଇ ପଥରକୁ ପୁଣି ଗୋଡ଼ରେ ଗଡ଼ାଇ ଗଡ଼ାଇ ଘର ପର୍ଯ୍ୟନ୍ତ ଆଣୁଥିଲେ ।

ଜଗବନ୍ଧୁ ଗଡ଼ରୋଡ଼ଙ୍ଗରେ ନିଜର ଗୃହ ନିର୍ମାଣ କରିଥିଲେ । ଏହି ନିବାସସ୍ଥଳୀ ଏକ ସୁପରିକଳ୍ପିତ ଯୋଜନାରେ ନିର୍ମିତ ହୋଇଥିଲା । ଏହି ଗୃହଟି ଆୟତାକାର ଥିଲା । ଏହାର ପଶ୍ଚିମ-ପୂର୍ବ ଦୈର୍ଘ୍ୟରେ ୨୩୪ ଫୁଟ ଓ ଦକ୍ଷିଣ-ଉତ୍ତର ପ୍ରସ୍ଥରେ ୧୩୬ ଫୁଟ ଥିଲା । ଏ ମଧ୍ୟରେ ୮ ବଖରା × ୪ ବଖରା ଚାଳଘର ଘେରି ରହିଥିଲା । ମାଙ୍କଡ଼ା ଚକି ପଥରରେ ନିର୍ମିତ ଖୁଣ୍ଟି ଉପରେ ଶେଣୀ ଓ ଓରା ଥିଲା । ଝାଟିମାଟିଦ୍ୱାରା ନିର୍ମିତ ଘରର କାନ୍ଥ ଚୂନ ପଲସ୍ତରା ହୋଇଥିଲା । ଏଗୁଡ଼ିକ ବକ୍ସିଙ୍କ ପହଡ଼ଘର, ଠା'ଘର, ରୋଷେଇଘର, କୋଠୀଘର, ଠାକୁରାଣୀଘର, ଭଣ୍ଡାରଘର, ଅସ୍ତ୍ରଶସ୍ତ୍ର ଘର, ପାନଘର ଓ ଶୋଇବାଘର ରୂପେ ବ୍ୟବହୃତ ହେଉଥିଲା । ବକ୍ସି କ୍ଷମତାସମ୍ପନ୍ନ ଧନୀ ବ୍ୟକ୍ତି ଥିଲେ । ସେତେବେଳେ ମଧ୍ୟ ଚୂନ, ଲୁହାପଥର ପ୍ରଭୃତିର ଅଭାବ ନ ଥିଲା । ତେବେ ବ୍ୟକ୍ତିଗତ ଭୋଗବିଳାସକୁ ଜଗବନ୍ଧୁ ନ ଚାହିଁ ସମୂହ କଲ୍ୟାଣକୁ ସେ ଶ୍ରେୟ ମନେ କରିଥିଲେ ।



ବକ୍ସି ଜଗବନ୍ଧୁଙ୍କ ଗଡ଼ରୋଡ଼ଙ୍ଗସ୍ଥ ବାସଗୃହ

ଜଗବନ୍ଧୁ ୧୭୯୦ ମସିହାରେ ଗଡ଼ରୋଡ଼ଙ୍ଗର ଗଡ଼ାଧୀଶ ହୋଇଥିଲେ ବୋଲି ଆଲୋଚକ ଦିବ୍ୟସିଂହ ଚମ୍ପତି ମତ ଦେଇଛନ୍ତି ।

**ବିବାହ** — ଜଗବନ୍ଧୁଙ୍କର ଶେରଗଡ଼ ରାଜା, ବଡ଼ାମ୍ବା ରାଜାଙ୍କ ସହିତ ବୈବାହିକ ସମ୍ପର୍କ ଥିଲା । ତାଙ୍କର ପ୍ରଥମ ପତ୍ନୀଙ୍କ ନାମ ଥିଲା ରାଧାମଣି ଜେମାଦେଈ । ତାଙ୍କର କୌଣସି ସନ୍ତାନ ନ ହେବାରୁ ସେ ଶ୍ୟାମସୁନ୍ଦରଙ୍କୁ ପୋଷ୍ୟପୁତ୍ର କରିଥିଲେ । ତାଙ୍କର ପୋଷ୍ୟାକନ୍ୟାଙ୍କ ନାମ ଥିଲା ପଦ୍ମାଦେବୀ । ଜଗବନ୍ଧୁଙ୍କ ଦ୍ୱିତୀୟ ପତ୍ନୀଙ୍କ ନାମ ଥିଲା ଚତୁରମଣି ଜେମାଦେଈ । ତାଙ୍କ ଗର୍ଭରୁ ଗୋଟିଏ ପୁତ୍ର ଜନ୍ମ ହେଲା । ତାଙ୍କର ନାମ ଥିଲା ଗୋପୀନାଥ ବିଦ୍ୟାଧର ।

**ବକ୍ସି ପଦରେ ନିଯୁକ୍ତିର ବିରୋଧ** — ରାଜାଙ୍କ ମୃତ୍ୟୁ ପରେ ତାଙ୍କ ଜ୍ୟେଷ୍ଠପୁତ୍ର ରାଜା ହେବା ପରମ୍ପରା ଭଳି ରୋଡ଼ଙ୍ଗ ବକ୍ସି ବଂଶରେ ବକ୍ସି ପଦବୀ ସେପରି ବଂଶଗତ ଥିଲା । ଜଗବନ୍ଧୁ ବକ୍ସି ଗୋପୀନାଥ ବିଦ୍ୟାଧରଙ୍କର ପୋଷ୍ୟପୁତ୍ର ଥିବା ପୂର୍ବରୁ ବର୍ଣ୍ଣିତ । ବକ୍ସି ଗୋପୀନାଥ ବିଦ୍ୟାଧରଙ୍କର ମୃତ୍ୟୁ ପରେ ତାଙ୍କର ସାନଭାଇ ଏହି ବକ୍ସି ପ୍ରଥା ପ୍ରଚଳନର ବିରୋଧ କଲେ । ସେ ଜଗବନ୍ଧୁଙ୍କୁ ରୋଡ଼ଙ୍ଗର ଗଡ଼ାଧୀଶ କରାଇଦେଲେ ନାହିଁ । ଏପରିକି ରୋଡ଼ଙ୍ଗ ଓ ଅନ୍ୟ ଜାଗିରୀ ଜମି ଉପଭୋଗରୁ ବଞ୍ଚିତ କଲେ । ଜଗବନ୍ଧୁ ଓ ତାଙ୍କ କକାଙ୍କ ମଧ୍ୟରେ ବିବାଦ ଲାଗିରହିଲା । କକାଙ୍କର କିନ୍ତୁ କୌଣସି କାରଣରୁ ମୃତ୍ୟୁ ହେଲା । ଜଗବନ୍ଧୁ ଏହି ହତ୍ୟାକାଣ୍ଡ ଘଟାଇଛନ୍ତି ବୋଲି ସନ୍ଦେହ ହେବା ସ୍ୱାଭାବିକ । ଜଗବନ୍ଧୁ ମଧ୍ୟ ଏହାପରେ ସମ୍ଭବତଃ ଗିରଫ ହେବା ଭୟରେ ଆତ୍ମଗୋପନ କଲେ । ମରହଟ୍ଟା ସରକାର ବକ୍ସି ଜଗବନ୍ଧୁଙ୍କୁ ରୋଡ଼ଙ୍ଗଗଡ଼ର ଅଧିକାରଚ୍ୟୁତ କରି ରୋଡ଼ଙ୍ଗ କିଲାକୁ ନିଜ ଶାସନାଧୀନରେ ରଖିଲେ ।

ଦ୍ୱିତୀୟ ପରିଚ୍ଛେଦ

# ବାଙ୍କି ଓ ରଣପୁର ଯୁଦ୍ଧ

୧୭୯୩ ଖ୍ରୀଷ୍ଟାବ୍ଦରୁ ୧୭୯୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦିବ୍ୟସିଂହ ଦେବ ଖୋରଧାର ରାଜା ଥିଲେ । ସେ ବାଙ୍କି ଆକ୍ରମଣ କରିବାପାଇଁ ଜୟୀ ରାଜଗୁରୁଙ୍କୁ ଆଦେଶ ଦେଲେ । ଜୟୀ ରାଜଗୁରୁ ଦାଣ୍ଡିମାଳ, ତେରଗଡ଼, ବାଣପୁର, ଲେମ୍ବାଇ, ସିରେଇ ପ୍ରଭୃତି ଅଞ୍ଚଳର ପାଇକମାନଙ୍କୁ ନେଇ ବାଙ୍କି ଅଭିଯାନରେ ବାହାରିଲେ । ବକ୍ସି ଜଗବନ୍ଧୁ ସେନାଧ୍ୟକ୍ଷ ହିସାବରେ ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକ ବାହିନୀକୁ ଧରି ବାଙ୍କି ଅଭିମୁଖେ ବାହାରିଲେ । ଖୋରଧା ସେନା କିନ୍ତୁ ଏ ଯୁଦ୍ଧରେ ସଫଳତା ହାସଲ କରି ନ ଥିଲେ । ଜୟୀ ରାଜଗୁରୁଙ୍କ ଜଙ୍ଘରେ କାଣ୍ଡ ବିଦ୍ଧ ହେବାରୁ ସେ ଆଘାତପ୍ରାପ୍ତ ହେଲେ । ଜଗବନ୍ଧୁଙ୍କ ଭାଇ ମଧ୍ୟ ଯୁଦ୍ଧରେ ନିହତ ହେଲେ । ବକ୍ସି ଏଥିରେ କ୍ରୋଧାନ୍ୱିତ ହୋଇ ବାଙ୍କିର ଧଳ ରାଜାଙ୍କୁ ବଧ କରିବାପାଇଁ ଖଣ୍ଡା ଧରି ବାହାରିଲେ । 'ଫିରିଙ୍ଗୀ କଳି ଭାରତ'ରେ ଏହାର ବର୍ଣ୍ଣନା ଅଛି, ଯଥା –

''ଭାଇର ନିଧନେ ବକ୍ସି ଯେ କଲେ କ୍ରୋଧ ।
ବୋଇଲେ ବାଙ୍କି ଧଳକୁ କରିବି ମୁଁ ବଧ ।।''

କିନ୍ତୁ ପାଇକ ସରଦାରମାନେ ତାଙ୍କୁ ଏଥିରୁ ନିବୃତ୍ତ କରାଇଲେ, ଯଥା –

''ସରଦାରମାନେ ବକ୍ସିଙ୍କ ଧରି କର ।
ମଣିମା ବାହୁଡ଼ି ଯିବା ଘାଟିକୁ ଏଥର ।
ସମସ୍ତ ବଚନେ ବାହୁଡ଼ିଲେ ବକ୍ସି ।
ଆସି ଜଣାଇଲେ ନୃପ ପାଶେ ଦୁଃଖ ରାଶି ।।''

ଦିବ୍ୟସିଂହ ଦେବଙ୍କ ମୃତ୍ୟୁ ପରେ ଦ୍ୱିତୀୟ ମୁକୁନ୍ଦ ଦେବ ରାଜଗାଦିରେ ବସିଲେ । ରଣପୁର ରାଜା ବୃନ୍ଦାବନ ନରେନ୍ଦ୍ର ଖୋରଧା ରାଜ୍ୟ ସୀମାରେ ଗଣ୍ଡଗୋଳ ସୃଷ୍ଟି କଲେ । ଯୁବକ ଦ୍ୱିତୀୟ ମୁକୁନ୍ଦଦେବ ଏଥିରେ କ୍ରୋଧାନ୍ୱିତ ହୋଇ ରଣପୁର ଆକ୍ରମଣ କରିବାକୁ ବାହାରିଲେ । ବକ୍ସି ଜଗବନ୍ଧୁ ଓ ଦେୱାନ ଭ୍ରମରବର ରାୟ ରାଜାଙ୍କୁ ରଣପୁର ଯିବାକୁ ବାରଣ କଲେ । ବରଂ ସେମାନଙ୍କୁ ଯୁଦ୍ଧକୁ ପଠାଇବାକୁ ପ୍ରସ୍ତାବ ଦେଲେ । 'ଫିରିଙ୍ଗୀ କଳି ଭାରତ'ରେ ଏହା ମଧ୍ୟ ବର୍ଣ୍ଣିତ ।

''ଯେଉଁ ହୁକୁମକୁ ପୃଥ୍ୱୀରେ ନାହିଁ ବୀର
କନ୍ଧ ବୃନ୍ଦାବନ ଯେ କେତେକ ମାତର ।
ଏ ଛାର କଥାକୁ ବିଜେ କରିବେ କାହିଁପାଇଁ ।
ଆଜ୍ଞା ହେଉ ଛାମୁରେ ବାନ୍ଧି ଆଣିବଇଁ ।।''

ରାଜା ଏହାପରେ ବକ୍ସି ଓ ଦେୱାନଙ୍କୁ ଅବିଳମ୍ବେ ରଣପୁର ରାଜ୍ୟ ଆକ୍ରମଣ କରିବାକୁ ହୁକୁମ ଦେଲେ ।

ଉଭୟେ ଜଗବନ୍ଧୁ ଓ ହରିହର ଭ୍ରମରବର ରଣପୁର ଅଭିଯାନରେ ବାହାରିଲେ । ବକ୍ସିଙ୍କ ଫଉଜ ପଛେ ପଛେ ଦେଓ୍ୱାନଙ୍କ ଫଉଜ ପଟୁଆର କରି ଗଲେ । 'ଫିରିଙ୍ଗୀ କଳି ଭାରତ'ରେ ଏହାର ସ୍ପଷ୍ଟ ଉଲ୍ଲେଖ ଅଛି, ଯଥା –

''ଓଲଗ ମେଲାଇ ଯେ ବକ୍ସି ବୀରମଣି,
ଆଗୁସାର ହୋଇ ଥାଟ କରିଲେ ପଲାଣି ।''

× × × ×

ଦିଆନେ ମୁରାଟିରେ ପଛ ପଟୁଆରେ,
ଯା'ର ନାମ ଚମକ ପଡ଼ଇ କଟକରେ ।''

ପୁଣି ''ଦିଆନେ ଡାକ ଦେଲେ ତୋପ ବେଗେ ଛାଡ଼''

× × × ×

''ବକ୍ସି ଡାକନ୍ତି ସୈନ୍ୟ ବେଢ଼ିକର ମାର ।''

ବକ୍ସି ଜଗବନ୍ଧୁ ଓ ଦେଓ୍ୱାନ ମିଳିତଭାବେ ସୈନ୍ୟ ଚାଳନା କରି ରଣପୁରଗଡ଼ ସହିତ କନ୍ଧନୂଆଗଡ଼ ଓ ନରସିଂହପୁରଗଡ଼ ଜୟ କଲେ । ଉଭୟେ ଖୋରଧାଗଡ଼ରେ ପହଞ୍ଚି ରାଜାଙ୍କୁ ଯଥାଯୋଗ୍ୟ ମାନ୍ୟତା ଜଣାଇଲେ ।

''ଦିଆନ ବକ୍ସି ଯେ ଛାମୁରେ ହେଲେ ଯାଇ
ଉଭା ହୋଇ ପୁଣି ତୁଷ୍ଟି ଯେ କରନ୍ତି ବିନୋଇଁ ।।''

ରଣପୁର ଜୟ କରିବାପରେ ରାଜା ଦ୍ୱିତୀୟ ମୁକୁନ୍ଦଦେବ କିନ୍ତୁ ପ୍ରଶଂସା ବା ପୁରସ୍କୃତ କରିବା ଦୂରେ ଥାଉ, ଉଭୟଙ୍କୁ ସେପରି ଆନ୍ତରିକତା ପ୍ରଦର୍ଶନ କରି ନ ଥିଲେ । ବରଂ କୌଣସି କାରଣରୁ ତାଙ୍କ ପ୍ରତି ବିମୁଖ ହୋଇପଡ଼ିଲେ । ୧୮୦୩ ମସିହାରେ ରାଜା କେବଳ ଜୟୀ ରାଜଗୁରୁଙ୍କୁ ଡାକି ବାଙ୍କି ଆକ୍ରମଣ କରିବାକୁ ଆଦେଶ ଦେଲେ । 'ଫିରିଙ୍ଗୀ କଳି ଭାରତ'ରେ ଏହାର ସ୍ପଷ୍ଟ ଉଲ୍ଲେଖ ଅଛି, ଯଥା –

''ବଜ୍ରାଙ୍ଗ ମଣ୍ଡଳେ କରିବେ ଚୋଟମୋଟ,
ପାତ୍ରଙ୍କୁ ନ କହିଲେ ନୃପତି ଗରିଷ୍ଟ ।

× × × ×

''ଗୁପତେ ରାଜଗୁରୁଙ୍କୁ କହିଲେ ନୃପରାଣ,
ବାଙ୍କି ପରେ ଖଣ୍ଡା ମୁଁ କରିବି ବର୍ଷଣ ।।''

ରାଜା ବକ୍ସି ଜଗବନ୍ଧୁଙ୍କୁ ବିଶ୍ୱାସକୁ ନ ନେଇ ଜୟୀ ରାଜଗୁରୁଙ୍କୁ ବାଙ୍କି ଓ ପରେ ଡମପଡ଼ା ଅଭିଯାନରେ ପଠାଇଲେ । ବକ୍ସି ଜଗବନ୍ଧୁ ଏହାର ପ୍ରତିବାଦ ନ କରି ନୀରବ ରହିଲେ । ରାଜା ଏକମାତ୍ର ଜୟୀ ରାଜଗୁରୁଙ୍କ ପରାମର୍ଶରେ ପରିଚାଳିତ ହେଲେ । 'ଫିରିଙ୍ଗୀ କଳି ଭାରତ'ରେ ଏହାର ମଧ୍ୟ ଉଲ୍ଲେଖ ଅଛି, ଯଥା –

''... ଏକା ଆଜ୍ଞା କରନ୍ତି ଗୋସାଇଁ ଜୟମୁନି
ରାଜ୍ୟ ଭଲ ମନ୍ଦ ବୁଝନ୍ତି ଲାଭହାନି ।''

## ତୃତୀୟ ପରିଚ୍ଛେଦ

# ଇଂରେଜଙ୍କୁ ବିରୋଧ

ଇଂରେଜମାନେ ନାଗପୁରରେ ମରହଟ୍ଟାମାନଙ୍କୁ ଜିଣିଲା ପରେ ମରହଟ୍ଟାମାନଙ୍କ ଅଧୀନରେ ଥିବା ଓଡ଼ିଶା ଅଧିକାର କରିବାକୁ ଯୋଜନା କଲେ । କର୍ଣ୍ଣେଲ ହାରକୋର୍ଟ ଓ କ୍ୟାପ୍‌ଟେନ୍ ମେଲଭିଲ ବହୁ ସୈନ୍ୟ, ରସଦ ଓ ଯୁଦ୍ଧ ସରଞ୍ଜାମ ଧରି ଦକ୍ଷିଣରୁ ଆସି ରମ୍ଭାରେ ପହଞ୍ଚିଲେ । ସେତେବେଳେ ବକ୍ସି ବାଣପୁରଠାରେ ଅବସ୍ଥାପିତ ଥିଲେ । ଇଂରେଜମାନେ ଗୋଟିଏ ଡଗରଦ୍ୱାରା ବକ୍ସିଙ୍କ ପାଖକୁ ଏକ ପତ୍ରରେ ଇଂରେଜ ସୈନ୍ୟଙ୍କୁ ବାଣପୁର ଖୋରଧା ବାଟ ଦେଇ କଟକ ଯିବାକୁ ଅନୁମତି ମାଗିଲେ ।

ବକ୍ସି ତାଙ୍କ ଉତ୍ତର ରଘୁ ପରମଗୁରୁ ନାମକ ଜଣେ ଓକିଲଙ୍କ ହାତେ ପଠାଇଲେ ।

ମେଲଭିଲ ପରମଗୁରୁଙ୍କୁ ଶାଲ୍ ଓ ମଠାଯୋଡ଼ ଇତ୍ୟାଦି ଦେଇ ତାଙ୍କଠାରୁ ଖୋରଧା ରାଜାଙ୍କ ସମ୍ପର୍କରେ ସମସ୍ତ ତଥ୍ୟ ସଂଗ୍ରହ କଲେ । ଏହାପରେ ଆଉ ଦୁଇ ଜଣ ଲୋକଙ୍କ ହାତରେ ବହୁ ଉପଢୌକନ ଦେଇ ରାଜା ମୁକୁନ୍ଦଦେବଙ୍କ ପାଖକୁ ପଠାଇଲେ ।

ରାଜା ଦ୍ୱିତୀୟ ମୁକୁନ୍ଦଦେବ ମରହଟ୍ଟାମାନଙ୍କ ପାଖେ ବନ୍ଧା ପଡ଼ିଥିବା ଲେମ୍ବାଇ ସମେତ ଚାରିଗୋଟି ପ୍ରଗଣା ଫେରିପାଇବାପାଇଁ ଉତ୍କଣ୍ଠିତ ଥିଲେ । ସେ ଇଂରେଜମାନଙ୍କ ସହାୟତାରେ ଏହି ଚାରୋଟି ପ୍ରଗଣା ଫେରିପାଇବେ ବୋଲି ମନେ କଲେ । ତେଣୁ ସେ ଏହି ସୁଯୋଗ ହାତଛଡ଼ା କରିବାକୁ ଚାହିଁ ନ ଥିଲେ । ସେ ତେଣୁ ତାଙ୍କ ଓକିଲଙ୍କୁ ହାରକୋର୍ଟଙ୍କ ପାଖକୁ ପଠାଇଲେ । ଚାରି ଗୋଟି ପ୍ରଗଣା ଫେରି ପାଇବା ସଙ୍ଗେ ସଙ୍ଗେ ସୈନ୍ୟ ସାହାଯ୍ୟ ଦେବା ବାବଦ ଏକ ଲକ୍ଷ ପାଇବାର ସର୍ତ୍ତ ସେ ରଖିଲେ । ହାରକୋର୍ଟ ରାଜାଙ୍କର ଦୁଇ ଗୋଟି ସର୍ତ୍ତ ମାନିନେଲେ । ସେ ଦଳବଳ ସହ ସମୁଦ୍ର କୂଳେ କୂଳେ ଅଗ୍ରସର ହେଲେ । ଚିଲିକା ମୁହାଣ ପାରି ହେବାପାଇଁ ମାଲୁଦ ତାଲୁକଦାର ହାରକୋର୍ଟଙ୍କୁ ସାହାଯ୍ୟ କଲେ । ମାଣିକପାଟଣାଠାରେ ଜଗନ୍ନାଥଙ୍କ ପଣ୍ଡାମାନେ ହାରକୋର୍ଟଙ୍କୁ ସମ୍ବର୍ଦ୍ଧନା କରି ପୁରୀକୁ ପାଛୋଟି ନେଲେ । ହାରକୋର୍ଟ ପୁରୀରୁ କଟକ ଯିବା ବାଟରେ ମରହଟ୍ଟାମାନେ ଇଂରେଜ ସୈନ୍ୟଙ୍କୁ ବାଧା ଦେବାପାଇଁ ଉଦ୍ୟମ କରିଥିଲେ । ମାତ୍ର ତାହା ନଗଣ୍ୟ ଥିଲା । ହାରକୋର୍ଟ ଅନାୟାସରେ କଟକରେ ପହଞ୍ଚିଲେ । ରାଜାଙ୍କର ସୈନ୍ୟ ସାହାଯ୍ୟର ଆବଶ୍ୟକତା ମଧ ପଡ଼ି ନ ଥିଲା । କଟକରେ ପହଞ୍ଚି ଇଂରେଜମାନେ ମଧ ବାରବାଟୀ ଦୁର୍ଗକୁ ଅତି ସହଜରେ ଅଧିକାର କରିନେଲେ ।

**ବକ୍ସି ଜଗବନ୍ଧୁଙ୍କ ସାହାଯ୍ୟ** — ବିଶିଷ୍ଟ ଐତିହାସିକ କେଦାରନାଥ ମହାପାତ୍ରଙ୍କ ତଥ୍ୟ ଅନୁଯାୟୀ କର୍ଣ୍ଣେଲ ହାରକୋର୍ଟ ପୁରୀକୁ ଅଭିଯାନ ଚଳାଇବା ସମୟରେ ବକ୍ସି ଜଗବନ୍ଧୁ ତାହାଙ୍କୁ ସାହାଯ୍ୟ ଦେଇଥିଲେ । କେହି କେହି ଆଲୋଚକ କିନ୍ତୁ ହାରକୋର୍ଟଙ୍କ ପୁରୀ ଅଭିଯାନରେ ବକ୍ସି ସାହାଯ୍ୟ କରିଥିବା ବିଷୟକୁ ସମ୍ପୂର୍ଣ୍ଣ ଅମୂଳକ ବୋଲି ମନ୍ତବ୍ୟ ଦେଇଛନ୍ତି । ବକ୍ସି ଅବଶ୍ୟ ବାଣପୁର ସଲଖେ ବାଟଦେଇ ଯିବା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିସାରିଥିଲେ । ମାତ୍ର ଇଂରେଜମାନଙ୍କ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ସହିତ ବୁଝାମଣା ହୋଇସାରିବା ପରେ ବକ୍ସିଙ୍କର ଇଂରେଜମାନଙ୍କୁ ବିରୋଧ କରିବାର କୌଣସି କାରଣ ନ ଥିଲା । ରାଜା ମଧ୍ୟ ଇଂରେଜମାନଙ୍କୁ ସୈନ୍ୟ ସାହାଯ୍ୟ ଦେବାପାଇଁ ଉତ୍କଣ୍ଠିତ ଥିଲେ । ସୁତରାଂ ଚିଲିକା ନିକଟବର୍ତ୍ତୀ ରୋଡ଼ଙ୍ଗ କିଲାର ମାଲିକ ହୋଇଥିବା ଦୃଷ୍ଟିରୁ ହାରକୋର୍ଟଙ୍କୁ ପୁରୀ ଅଭିଯାନରେ ସାହାଯ୍ୟ ଦେଇଥିବା ସ୍ୱାଭାବିକ ।

**ଇଂରେଜମାନଙ୍କ ସହିତ ଯୁଦ୍ଧ** — ୧୮୦୪ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଖୋରଧାଗଡ଼ ଆକ୍ରମଣ କଲେ । ରାଜ୍ୟର ସେନାପତି ବକ୍ସି ଜଗବନ୍ଧୁ ଥିଲେ । ରାଜା ଦ୍ୱିତୀୟ ମୁକୁନ୍ଦଦେବ ଅନଭିଜ୍ଞ ଥିବାରୁ ଜୟୀ ରାଜଗୁରୁଙ୍କଦ୍ୱାରା ପରିଚାଳିତ ହେଉଥିଲେ । ସେ ରାଜଗୁରୁଙ୍କ କୁପରାମର୍ଶରେ ପଡ଼ି ବକ୍ସି ଓ ଦେୱାନଙ୍କ ପ୍ରତି ଅବହେଳା ଦେଖାଉଥିଲେ, ଏହା ସ୍ପଷ୍ଟ । ମାତ୍ର ଇଂରେଜମାନଙ୍କ ଆକ୍ରମଣକୁ ପ୍ରତିହତ କରିବାକୁ ରାଜଗୁରୁଙ୍କ ସହ ବ୍ୟକ୍ତିଗତ ବିଦ୍ୱେଷସତ୍ତ୍ୱେ ସେମାନେ ଅଣ୍ଟାଭିଡ଼ି ବାହାରିଥିଲେ । ଦେୱାନ ହରିହର ଭ୍ରମରବର ରାୟ ଡେଲାଙ୍ଗ ଯୁଦ୍ଧରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ବିଶିଷ୍ଟ ଐତିହାସିକ ଡଃ ଭବାନୀ ଚରଣ ରାୟ କିନ୍ତୁ ଜଗବନ୍ଧୁଙ୍କର ୧୮୦୪ ଯୁଦ୍ଧରେ ଯୋଗଦାନ କରିଥିବା ବିଷୟରେ ସମ୍ପୂର୍ଣ୍ଣ ନିରବ ରହିଛନ୍ତି ।

''ମନେହୁଏ ଯେ ବକ୍ସି ଜଗବନ୍ଧୁଙ୍କର ବୋଧହୁଏ ଏ ପ୍ରକାର ଚିନ୍ତାଧାରା ବା ଚକ୍ରାନ୍ତ ଫଳବତୀ ହେବ ବୋଲି ହୃଦ୍‌ବୋଧ ହୋଇ ନ ଥିଲା ବା ଏତାଦୃଶ କାର୍ଯ୍ୟରେ ଭାଗୀଦାର ହେବା କାର୍ଯ୍ୟରୁ ସେ ନିବୃତ୍ତ ରହିଥିଲେ ।''...

× × × × ×

**ଇଂରେଜ ଶାସନକୁ ଜଗବନ୍ଧୁଙ୍କ ସ୍ୱୀକୃତି ପ୍ରଦାନ** — ଇଂରେଜ ରାଜତ୍ୱର ଆରମ୍ଭରେ ବକ୍ସି ଜଗବନ୍ଧୁ ବ୍ରିଟିଶ ରାଜତ୍ୱକୁ ସ୍ୱୀକାର କଲେ । ବିଶିଷ୍ଟ ଐତିହାସିକ ଡଃ ଭବାନୀ ରାୟ 'ବିପ୍ଳବୀ ବୀର ଜଗବନ୍ଧୁ' ଶୀର୍ଷକ ପୁସ୍ତକରେ ଏ ସଂକ୍ରାନ୍ତରେ ଲେଖିଛନ୍ତି – ''... ଯେହେତୁ ସେ ଜଣେ ସୁଚିନ୍ତିତ ବିଚାରବନ୍ତ ପୁରୁଷ ଥିଲେ, ସେ ବ୍ରିଟିଶ ଶାସନର ଅଭ୍ୟୁଦୟ ପରେ ମଧ୍ୟ ସହିଷ୍ଣୁତା ସହ କି ଫଳ ମିଳିବ, ତାହାର ପ୍ରତୀକ୍ଷାରେ ଥିଲେ । ବିଦେଶୀ ବ୍ରିଟିଶ ଶାସନ ତତ୍‌କାଳୀନ ପ୍ରଚଳିତ ମରାଠା ଶାସନଠାରୁ ଅଧିକ ଶୁଭଫଳ ପ୍ରଦାନ କରିବାର ଆଶା ଓ ଆକାଙ୍‌କ୍ଷା ଅନ୍ୟମାନଙ୍କ ସହିତ ଜଗବନ୍ଧୁଙ୍କୁ ମଧ୍ୟ ପ୍ରଭାବିତ କରିଥିଲା । × × × ସେ ଭାବିଥିଲେ ଯେ ବିଦେଶୀ ଶାସନ, ନ୍ୟାୟ ପ୍ରଦାନ କରି ଓଡ଼ିଆମାନଙ୍କର ଅବସ୍ଥାକୁ ଉନ୍ନତରୁ ଉନ୍ନତତର କରିବ...'' କିନ୍ତୁ ପ୍ରକୃତରେ ହେଲା କ'ଣ ?

## ଚତୁର୍ଥ ପରିଚ୍ଛେଦ

# ବ୍ରିଟିଶ ଶାସନର କୁପରିଣାମ

## (କ) ରାଜସ୍ୱ ବିଭାଗର ଶୋଷଣ

ଓଡ଼ିଶାର ବାଲେଶ୍ୱରଠାରୁ ପୁରୀ ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳ କଟକ ଡିଭିଜନ ନାମରେ ନାମିତ ହେଲା । ଏହାର ମୁଖ୍ୟ କାର୍ଯ୍ୟାଳୟ କଟକରେ ରହିଲା । ୧୮୦୫ ଜୁଲାଇ ମାସ ୫ ତାରିଖରେ ଜର୍ଜ ୱେବ୍ କଲେକ୍ଟର ଓ ୧୮୦୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ ରବର୍ଟ କେର୍ ମାଜିଷ୍ଟ୍ରେଟ୍ ଭାବେ ନିଯୁକ୍ତ ହେଲେ । ୧୮୦୫ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୧୪ ତାରିଖରେ ଇଂରେଜ ଶାସନ ପରିଷଦ ଉପରାଷ୍ଟ୍ରପତିଙ୍କ ନିର୍ଦ୍ଦେଶାନୁସାରେ କଟକ ଡିଭିଜନ ବଙ୍ଗପ୍ରଦେଶ ଅଧୀନରେ ରହି ଶାସିତ ହେଲା । ବଙ୍ଗ ସରକାରଙ୍କ ରାଜଧାନୀ କଲିକତା ଥିଲା । ତେଣୁ କଲିକତା ଓଡ଼ିଶା ଶାସନର ମୁଖ୍ୟ କାର୍ଯ୍ୟାଳୟ ହେବା ସ୍ୱାଭାବିକ ।

ଇଂରେଜ ଶାସକମାନେ ରାଜତ୍ୱର ଆରମ୍ଭରୁ ବନ୍ଦୋବସ୍ତ ଓ ଖଜଣା ଆଦାୟ ଉପରେ ଗୁରୁତ୍ୱ ଦେଲେ । ସେଥିପାଇଁ ଦୁଇ ଜଣ ଇଂରେଜ କର୍ମକର୍ତ୍ତାଙ୍କୁ ଦାୟିତ୍ୱ ଦିଆଗଲା । ୧୮୦୫ ଖ୍ରୀ.ରେ ରେଗୁଲେସନ ୧୨ ଅନୁଯାୟୀ ବାର୍ଷିକ ଆୟ ନିର୍ଦ୍ଧାରଣ କରିବାପାଇଁ ବନ୍ଦୋବସ୍ତ କରିବାର ବ୍ୟବସ୍ଥା ହେଲା । ଗୋପାଳ ପଣ୍ଡିତ ଓ ନାରାୟଣ ରାୟ ମହାଶୟ ନାମକ ଦୁଇ ମରାଠା ଅଭିଲେଖ ରକ୍ଷକଙ୍କଠାରୁ ଓଡ଼ିଶାର ମରାଠା କାଳୀନ ଅମୀଲ, ତାଲୁକଦାର, ମକଦ୍ଦମ ଓ ସର୍ବରାକାରମାନଙ୍କର ଏକ ତାଲିକା ପାଇଲେ । ସେମାନଙ୍କ ସଙ୍ଗେ ଖଜଣା ଦେବା ସମ୍ପର୍କୀୟ ଏକ ଚୁକ୍ତି ପତ୍ର ମଧ୍ୟ ସମ୍ପାଦନ କରିଥିଲେ ।

ଚୁକ୍ତିପତ୍ର ସମ୍ପାଦନ କରିବାପାଇଁ ଯେଉଁମାନେ ଆସିଥିଲେ, ସେମାନଙ୍କ ମଧ୍ୟରେ ବକ୍ସି ଜଗବନ୍ଧୁ ଥିଲେ ଅନ୍ୟତମ । ସେ ନୂତନ ସରକାରଙ୍କୁ ନିର୍ଦ୍ଧାରିତ ଖଜଣା ଦେବାକୁ ଅଙ୍ଗୀକାରବଦ୍ଧ ହେଲେ ।

୧୮୦୪ ଖ୍ରୀଷ୍ଟାବ୍ଦରେ ଚାର୍ଲସ ଗ୍ରୋଏମ ବର୍ଷକପାଇଁ ବନ୍ଦୋବସ୍ତ କଲେ । ସେଥିରେ ରାଜସ୍ୱର ପରିମାଣ ଥିଲା ଟ୧୧;୮୦,୮୭୦ । ଏହା ପୂର୍ବ ମରହଟ୍ଟା ରାଜତ୍ୱର ରାଜସ୍ୱଠାରୁ ଏକ ଲକ୍ଷ ଟଙ୍କା ଅଧିକ ଥିଲା । କଟକ କଲେକ୍ଟର ଜର୍ଜ ୱେବ୍ ୧୮୦୫ ଖ୍ରୀଷ୍ଟାବ୍ଦରେ ତିନି ବର୍ଷପାଇଁ ଯେଉଁ ବନ୍ଦୋବସ୍ତ କଲେ ସେଥିରେ ମୋଟ

ବାର୍ଷିକ ରାଜସ୍ୱ ଟ୧୨୩୪୩୯୭; ୧୮୦୮ ଖ୍ରୀଷ୍ଟାବ୍ଦପାଇଁ ଯେଉଁ ବାର୍ଷିକ ବନ୍ଦୋବସ୍ତ କଲେ ତା'ର ବାର୍ଷିକ ଜମା ଟ୧୪୫୪,୫୦୨ ହେଲା । ୧୮୧୩ ଖ୍ରୀଷ୍ଟାବ୍ଦରେ ରିଚାର୍ଡସନଙ୍କ ବନ୍ଦୋବସ୍ତରେ ଓଡ଼ିଶାର ବାର୍ଷିକ ଜମା ଟ୧୪୬୯୫୦୧ ହେଲା । ୧୮୧୭ ଖ୍ରୀଷ୍ଟାବ୍ଦ ପୂର୍ବ ବର୍ଷ ଅର୍ଥାତ୍ ୧୮୧୬ ବନ୍ଦୋବସ୍ତରେ ବାର୍ଷିକ ଜମା ଟ୧୫୪୧୯୬୯କୁ ବୃଦ୍ଧି ପାଇଲା ।

ବ୍ରିଟିଶ ସରକାର ସ୍ଥାୟୀ ବନ୍ଦୋବସ୍ତ କରିବାକୁ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ଅଧିକ ରାଜସ୍ୱ ବୃଦ୍ଧି ହାସଲ କରିବା ଉଦ୍ଦେଶ୍ୟରେ ଅସ୍ଥାୟୀ ବନ୍ଦୋବସ୍ତ ମାନ କରି ଜମା ବଢ଼ାଇବାରେ ଲାଗିଲେ । ସରକାର ମଧ୍ୟ ପ୍ରଜା ଅସନ୍ତୋଷକୁ ଭ୍ରୂକ୍ଷେପ କଲେ ନାହିଁ । ବରଂ ସ୍ଥାୟୀ ବନ୍ଦୋବସ୍ତ କରିବା ପୂର୍ବରୁ ସରକାରଙ୍କର ରାଜସ୍ୱ ବୃଦ୍ଧି କରିବା ଯୁକ୍ତିଯୁକ୍ତ ବୋଲି ମତ ଦେଲେ ।

ବନ୍ଦୋବସ୍ତ ସମୟରେ ସରକାର ଖଜଣା ବଢ଼ାଇବା ଦିଗରେ ପ୍ରାଧାନ୍ୟ ଦେଲେ । ପୂର୍ବରୁ ବନ୍ୟା, ଅତ୍ୟଧିକ ବର୍ଷା, ମରୁଡ଼ି ବା ଅନ୍ୟ କୌଣସି ପ୍ରାକୃତିକ ବିପର୍ଯ୍ୟୟ ଘଟିଲେ ତହସିଲଦାରମାନେ କ୍ଷତିଗ୍ରସ୍ତ ଅଞ୍ଚଳକୁ ଯାଇ ରୟତମାନଙ୍କ କ୍ଷତି, ଅଭାବ, ଅସୁବିଧା ପ୍ରଭୃତିର ସମୀକ୍ଷା କରୁଥିଲେ । ଖଜଣାଦେୟରୁ ରିହାତି ବି ମିଳୁଥିଲା । ଓଡ଼ିଶାରେ ପ୍ରାୟ ଅଧିକାଂଶ ବର୍ଷ ବନ୍ୟାବିପ୍ଳାତ ଘଟିଥାଏ । ପ୍ରଚଣ୍ଡ ବର୍ଷା ବା ମରୁଡ଼ି ହେଲେ ଖଜଣାଛାଡ଼ ବା ଆଂଶିକ ଖଜଣା ଦେବାପାଇଁ ବ୍ୟବସ୍ଥା ଥିଲା । ମାତ୍ର ନୂତନ ସରକାର ରୟତମାନଙ୍କର ଏ ଅସୁବିଧାକୁ ଦୃଷ୍ଟି ଦେଲେ ନାହିଁ । ଉଦାହରଣସ୍ୱରୂପ, ନୂତନ ଜଗନ୍ନାଥ ରାସ୍ତା ତିଆରି ସମୟରେ ଚାଷୀମାନଙ୍କ ଚାଷ ଜମି ସରକାର ନେଇ ସେଥିରେ ରାସ୍ତା ନିର୍ମାଣ କଲେ । କିନ୍ତୁ ଜମିର ମାଲିକମାନଙ୍କୁ କୌଣସି କ୍ଷତିପୂରଣ ଦେଲେ ନାହିଁ ।

ଇଂରେଜ ସରକାର ବେଳେବେଳେ ଲୋକଙ୍କ ଅଭାବ ଅସୁବିଧାର ସୂଚନା ଅବଶ୍ୟ ପାଉଥିଲେ । ମାତ୍ର କଲେକ୍ଟର ୱେବ୍, ଫାକୟାର ୱାର୍ଡେ, ରିଚାର୍ଡସନ ପ୍ରଭୃତି – ଯେଉଁମାନେ କି ଖଜଣା ଆଦାୟ ଦାୟିତ୍ୱରେ ଥିଲେ – ସେମାନେ ଲୋକମାନଙ୍କର ଦୁର୍ଦ୍ଦଶା ପ୍ରତି ଦୃଷ୍ଟି ଦେଉ ନ ଥିଲେ । ବରଂ ଲୋକମାନଙ୍କର ସାମର୍ଥ୍ୟ ଥାଇ ମଧ୍ୟ ସରକାରଙ୍କ ନ୍ୟାଯ୍ୟ ଖଜଣା ନ ଦେବାକୁ ଏହା ଏକ ବାହାନା ବୋଲି ସରକାର ବିଚାର କଲେ ।

ଓଡ଼ିଶା ଜମିଦାରମାନେ ବ୍ରିଟିଶ ସରକାରଙ୍କୁ ବର୍ଦ୍ଧିତ ନିର୍ଦ୍ଧାରିତ ରାଜସ୍ୱ ଦେବାକୁ ଅସମର୍ଥ ହେଲେ । ସେମାନେ ଫଳରେ ମହାଜନମାନଙ୍କଠାରୁ କରଜ କରି ରାଜସ୍ୱ ପଇଠ କରିବାକୁ ବାଧ୍ୟ ହେଲେ । କିନ୍ତୁ ମହାଜନ ୨୫%ରୁ ୩୬% ଚକ୍ରବୃଦ୍ଧି ସୁଧ ଆଦାୟ କଲେ । ଫଳରେ ଜମିଦାରମାନେ ଯେଉଁ କରଜ ନେଉଥିଲେ ତାହା ଆଉ

ସୁଝି ପାରିଲେ ନାହିଁ । ମହାଜନମାନେ ମଧ୍ୟ ଜମିଦାରମାନଙ୍କୁ ଆଉ କରଜ ଦେଲେ ନାହିଁ । ତେଣୁ ଜମିଦାର ସରକାରଙ୍କୁ ଖଜଣା ଦେଇପାରିଲେ ନାହିଁ ।

× × × × ×

ରାଜସ୍ୱ ବୃଦ୍ଧି ସାଙ୍ଗକୁ ତାହାକୁ ନିର୍ଦ୍ଧାରିତ ସମୟ ମଧ୍ୟରେ ପୈଠ କରିବାକୁ ଚାପ ଦେବା ଫଳରେ ରାଜସ୍ୱର ବକେୟା ବୋଝ ପ୍ରତିବର୍ଷ ବୃଦ୍ଧି ପାଇଲା । ୧୮୦୫-୦୬ ଶେଷକୁ ବକେୟା ପରିମାଣ ଟ୪୭୩,୬୮୩ ଥିଲାବେଳେ ୧୮୧୫-୧୬ ବର୍ଷ ଶେଷକୁ ଏହାର ପରିମାଣ ଟ୫୨୭୪୨୦ରେ ପହଞ୍ଚିଲା ।

ଓଡ଼ିଶାରେ ପ୍ରତିବର୍ଷ ଖଜଣା ବାକି ପଡ଼ିବାର ହିସାବ ତଳେ ଦିଆଗଲା ।

| ବର୍ଷ | ବାକି |
|---|---|
| ୧୮୦୫-୦୬ | ୭୩,୬୮୩ ଟଙ୍କା |
| ୧୮୦୬-୦୭ | ୧,୨୧,୯୩୪ ଟଙ୍କା |
| ୧୮୦୭-୦୮ | ୮୨,୯୬୯ ଟଙ୍କା |
| ୧୮୦୮-୦୯ | ୬୫,୭୩୭ ଟଙ୍କା |
| ୧୮୦୯-୧୦ | ୧,୯୮,୮୯୩ ଟଙ୍କା |
| ୧୮୧୦-୧୧ | ୧,୮୯, ୮୬୨ ଟଙ୍କା |
| ୧୮୧୧-୧୨ | ୨,୮୫,୪୩୬ ଟଙ୍କା |
| ୧୮୧୨-୧୩ | ୪,୨୭,୮୦୬ ଟଙ୍କା |
| ୧୮୧୩-୧୪ | ୪,୨୭,୪୩୮ ଟଙ୍କା |
| ୧୮୧୪-୧୫ | ୩,୭୪,୫୭୨ ଟଙ୍କା |
| ୧୮୧୫-୧୬ | ୫,୨୭,୪୨୦ ଟଙ୍କା |

ଲକ୍ଷ ଲକ୍ଷ ଟଙ୍କା ବକେୟା ପଡ଼ିବାରୁ ବ୍ରିଟିଶ ସରକାର ତା'ର ପ୍ରକୃତ କାରଣ ବୁଝିବା ଦୂରେ ଥାଉ, ଅଧିକ ଆୟ ପାଇବାପାଇଁ ଏକ ଅଭିନବ ନୀତି ପ୍ରଣୟନ କଲେ । ଏହାଦ୍ୱାରା ଯେଉଁ ଜମିଦାରୀର ଜମା ଟ୫୦୦୦ରୁ କମ୍ ତାହା କଟକରେ ଓ ଯେଉଁ ଜମିଦାରୀର ଆୟ ଟ୫୦୦୦ରୁ ଅଧିକ ତାହା କଲିକତାରେ ବିକ୍ରି ହେବାର ବ୍ୟବସ୍ଥା ହେଲା । ସେତେବେଳେ ଓଡ଼ିଶାରୁ କଲିକତା ଯିବାପାଇଁ ସହଜ ରାସ୍ତା ନ ଥିଲା । କଟକରୁ ଲୋକେ ପାଦରେ ବା ପାଲିଙ୍କିରେ ଚାନ୍ଦବାଲି ପର୍ଯ୍ୟନ୍ତ ଯାଇ ସେଠାରୁ ବୋଇତରେ କଲିକତା ଯାଉଥିଲେ । ଯିବାପାଇଁ ପ୍ରାୟ ପନ୍ଦର ଦିନ ଲାଗୁଥିଲା । ଓଡ଼ିଆ ଜମିଦାରମାନଙ୍କର କୌଣସି ଏଜେଣ୍ଟ ମଧ୍ୟ ସେଠାରେ ନ ଥିଲେ । କେବେ ଇଷ୍ଟେଟ୍‌ଗୁଡ଼ିକ ନିଲାମ ହେବ ତାହା ଜାଣିବାର ସୁଯୋଗ ନ ଥିଲା । ଇଂରେଜ ଶାସନ ପ୍ରଣାଳୀ ଦେଶରେ ନୂତନ ଥିବାରୁ ସେମାନେ ଆଇନକାନୁନ

ବିଷୟରେ ଅଜ୍ଞ ଥିଲେ । ଉଦାହରଣସ୍ୱରୂପ, କଲିକତାରେ କୌଣସି ଇଷ୍ଟେଟ୍ ନିଲାମରେ ବିକ୍ରି ହେବା ପୂର୍ବରୁ ଆଇନ ଅନୁଯାୟୀ ଏକ ମାସ ଆଗରୁ ଜିଲ୍ଲା କୋର୍ଟରେ ନୋଟିସ ଦେବାପାଇଁ ନିର୍ଦ୍ଦେଶ ଥିଲା । କିନ୍ତୁ ବଙ୍ଗୀୟ ଓ ମୁସଲମାନ ଅମଲାମାନେ ଷଡ଼୍‌ଯନ୍ତ୍ର କରି ନୋଟିସ ବୋର୍ଡରେ ନୋଟିସ ଦେଉ ନ ଥିଲେ ବା ଜନସାଧାରଣଙ୍କ ଦୃଷ୍ଟିରେ ପଡ଼ିବା ପୂର୍ବରୁ ତାହାକୁ ଚିରି ଦେଉଥିଲେ । ସୁତରାଂ ଓଡ଼ିଆ ଇଷ୍ଟେଟ୍ ମାଲିକଙ୍କ ଅଜ୍ଞାତସାରରେ 'ସନ୍‌ସେଟ୍ ଲ' ବା ସୂର୍ଯ୍ୟାସ୍ତ ପୂର୍ବରୁ ନିଲାମ ବିକ୍ରି କାର୍ଯ୍ୟ ସମ୍ପନ୍ନ ହେବାରୁ ଅଣଓଡ଼ିଆମାନେ ସେଗୁଡ଼ିକୁ ଖରିଦ କରିନେଉଥିଲେ ।

ଦଶ ବର୍ଷ ମଧ୍ୟରେ ଅର୍ଥାତ୍ ୧୮୦୬ରୁ ୧୮୧୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ବର୍ଷକୁ ହାରାହାରି ୧୦୧ ହିସାବରେ ୧୦୧୧ଟି ଜମିଦାରୀ ନିଲାମ ହୋଇଗଲା । ବ୍ରିଟିଶମାନଙ୍କ ଓଡ଼ିଶା ଅଧିକାର ସମୟରେ ୨୩୪୦ଜଣ ଓଡ଼ିଆ ଇଷ୍ଟେଟ ମାଲିକମାନେ ଇଂରେଜ ସରକାରଙ୍କ ସଙ୍ଗେ ନାମ ରେଜେଷ୍ଟ୍ରି କରି ଚୁକ୍ତିପତ୍ର ସମ୍ପାଦନ କରିଥିଲେ । ଏହି ବିକ୍ରି ମାହାଲ ମଧ୍ୟରୁ ୩୫୦ ମାହାଲ ଓଡ଼ିଶା ବାହାରର ଲୋକ ଖର୍ଦ୍ଦି କରିଥିଲେ । ସରକାରୀ କର୍ମଚାରୀ ତାଙ୍କ ନାମରେ ଅଧିକା ତାଙ୍କ ସମ୍ପର୍କୀୟଙ୍କ ନାମରେ ୧୬୩ଟି ମାହାଲ ଖର୍ଦ୍ଦି କରିଥିଲେ । କଲିକତାର ଅତି ସାଧାରଣ ଲୋକ ରାତାରାତି ଓଡ଼ିଶାର ଜମିଦାର ହୋଇଗଲେ । ସ୍ୱଚ୍ଛଳ ଅବସ୍ଥାରେ ଥିବା ଓଡ଼ିଆ ଜମିଦାରମାନେ ଓ ସେମାନଙ୍କ ପରିବାରବର୍ଗ ଦାଣ୍ଡର ଭିକାରି ହୋଇଗଲେ ।

ଖୋରଧାର ରାଜସ୍ୱ ମଧ୍ୟ ପ୍ରତି ବର୍ଷ ବୃଦ୍ଧି ପାଇଲା । ୧୮୦୪-୦୫ ଖ୍ରୀଷ୍ଟାବ୍ଦରେ ଏହା ୧,୦୬,୦୦୦ ଟଙ୍କା ଥିଲା । ଏହା କିପରି ବୃଦ୍ଧି ପାଇଲା ତାହା ନିମ୍ନୋକ୍ତମତେ ଦିଆଗଲା ।

| ବର୍ଷ | ରାଜସ୍ୱ |
|---|---|
| ୧୮୦୪-୦୫ | ୧,୦୬,୦୦୦ ଟଙ୍କା |
| ୧୮୦୫-୦୬ | ୧,୦୭,୮୪୧ ଟଙ୍କା |
| ୧୮୦୬-୦୭ | ୧,୧୬,୪୭୪ ଟଙ୍କା |
| ୧୮୦୭-୦୮ | ୧,୦୪,୪୭୪ ଟଙ୍କା |
| ୧୮୦୮-୦୯ | ୧,୦୪,୪୭୪ ଟଙ୍କା |
| ୧୮୧୦-୧୧ | ୧,୧୮,୩୩୪ ଟଙ୍କା |
| ୧୮୧୧-୧୨ | ୧,୧୫,୮୧୮ ଟଙ୍କା |
| ୧୮୧୨-୧୩ | ୧,୧୪,୯୧୫ ଟଙ୍କା |
| ୧୮୧୩-୧୪ | ୧,୧୪,୯୧୫ ଟଙ୍କା |
| ୧୮୧୪-୧୫ | ୧,୧୯,୫୫୫ ଟଙ୍କା |
| ୧୮୧୫-୧୬ | ୧,୩୮,୨୭୪ ଟଙ୍କା |

**ବର୍ଷକୁ ବର୍ଷ ରାଜସ୍ୱ ବୃଦ୍ଧି** – ୧୮୦୮-୧୮୦୯ ଖ୍ରୀଷ୍ଟାବ୍ଦକୁ ଖୋର୍ଦ୍ଧାର ରାଜସ୍ୱ ୧ ଲକ୍ଷ ୧୮ ହଜାର ଟଙ୍କାରେ ପହଞ୍ଚିଲା । ଏହି ବୃଦ୍ଧି ରାଜସ୍ୱରେ ଗଣେଶବାବୁ ଓ ଶ୍ୟାମାନନ୍ଦ ରାୟ ନାମକ ଦୁଇ ଜଣ ବାହାର ପ୍ରଦେଶର ବ୍ୟକ୍ତିଙ୍କୁ ଖୋର୍ଦ୍ଧା ମାହାଲ ଦଶ ବର୍ଷ ପାଇଁ ନିଲାମ ଦିଆଗଲା । ଏହି ବର୍ଦ୍ଧିତ ରାଜସ୍ୱ ପ୍ରଜାମାନେ ଦେବା ଅସମ୍ଭବ ଥିଲା । ଏହି ବର୍ଦ୍ଧିତ ରାଜସ୍ୱ ଦେଇ ନ ପାରି ପ୍ରଜାମାନେ ସରକାରଙ୍କଦ୍ୱାରା ନିର୍ଯାତିତ ହେଲେ ।

## (ଖ) ଏକଚାଟିଆ ଲୁଣ ବ୍ୟବସାୟ

ଇଂରେଜ ଐତିହାସିକ ଷ୍ଟାର୍ଲିଙ୍ଗ୍ ଲେଖିଛନ୍ତି ଯେ ଭାରତର ସର୍ବୋତ୍କୃଷ୍ଟ ଲୁଣ ଓଡ଼ିଶାରେ ମିଳେ । ଭାରତର ଅନ୍ୟାନ୍ୟ ସ୍ଥାନରେ, ଯଥା – ଗୁଜୁରାଟ, ମହାରାଷ୍ଟ୍ର, କର୍ଣ୍ଣାଟକ, କେରଳ, ତାମିଲନାଡୁ, ଆନ୍ଧ୍ର ଓ ବଙ୍ଗଳା ପ୍ରଭୃତି ସମୁଦ୍ର କୂଳବର୍ତ୍ତୀ ପ୍ରଦେଶମାନଙ୍କରେ ଲୁଣ ଉତ୍ପନ୍ନ ହୁଏ । କିନ୍ତୁ ଲୁଣ ସଫା ଓ ନିର୍ମଳ ଥିବାରୁ ଓଡ଼ିଶାର ଲୁଣ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହେଉଥିଲା । ଅନ୍ୟାନ୍ୟ ପ୍ରଦେଶର ଲୋକେ ଏହାକୁ ପସନ୍ଦ କରୁଥିଲେ ।

ସାଧାରଣତଃ ଲୁଣ ତିନିଶ୍ରେଣୀର ମିଳେ । ଲୁଣିପାଣିକୁ ସିଦ୍ଧ କଲେ ଯେଉଁ ଲୁଣ ବାହାରେ ତାହାକୁ ପଙ୍ଗା ଲୁଣ କୁହାଯାଏ । ସୂର୍ଯ୍ୟ କିରଣରେ ଶୁଖିବାଦ୍ୱାରା ଯେଉଁ ଲୁଣ ଉତ୍ପାଦିତ ହୁଏ, ତାହାକୁ କଚା ଲୁଣ କହନ୍ତି । ପଟାଳି ପଟାଳି ବାନ୍ଧି ତହିଁରେ ଲୁଣ ପାଣି ମଡ଼ାଇବାଦ୍ୱାରା ଯେଉଁ ଲୁଣ ବାହାରେ, ତାହାର ନାମ ଗୋଡ଼ା । ଭୁଷଣ୍ଡପୁର, କୁହୁଡ଼ି, ବାଣପୁର, ଖଲିକୋଟ, ହୁମା, ଗଞ୍ଜାମ ପ୍ରଭୃତିରେ ପଙ୍ଗା ଲୁଣ ମିଳେ । ଚିଲିକାର ଦକ୍ଷିଣାଞ୍ଚଳ, ଯଥା – ଟୁଆ, ସାତପଡ଼ା, ପାରିକୁଦ ପ୍ରଭୃତିରେ କରକଚା ଲୁଣ ଦେଖାଯାଏ ।

ମରହଟ୍ଟା ରାଜତ୍ୱ ସମୟରେ ଲୁଣ ଆମଦାନୀ ସ୍ଥଳରେ ମହଣ ଲୁଣର ମୂଲ୍ୟ ତିନିଅଣାରୁ ଚାରିଅଣା ଥିଲା । ଲୁଣ ଦର ମଧ୍ୟ କମ୍ ଥିବାରୁ ଲୋକମାନେ ଶସ୍ତାରେ ଲୁଣ ପାଇପାରୁଥିଲେ । ବ୍ୟବସାୟୀମାନେ ମଧ୍ୟ ଲୁଣ ବ୍ୟବସାୟରୁ ଯଥେଷ୍ଟ ଲାଭ ପାଉଥିଲେ ।

୧୮୦୪ ମସିହାରେ ଓଡ଼ିଶା ଇଂରେଜମାନଙ୍କଦ୍ୱାରା ଅଧିକୃତ ହେଲା । ବ୍ରିଟିଶ ଗଭର୍ଣ୍ଣର ଜେନେରାଲ ଘୋଷଣା କଲେ ଯେ ଲୁଣ ଉତ୍ପନ୍ନ କରିବାର ଅଧିକାର କେବଳ ସରକାରଙ୍କର ରହିବ । ସ୍ଥାନୀୟ ଜମିଦାର ବା ଅନ୍ୟାନ୍ୟ ବ୍ୟବସାୟୀମାନେ ଲୁଣ ଉତ୍ପନ୍ନ କରିପାରିବେ ନାହିଁ । ଯେଉଁମାନେ ଲୁଣ ମାରି ପେଟ ପୋଷୁଥିଲେ ସେମାନଙ୍କୁ ଲୁଣ ମାରିବାପାଇଁ ବାରଣ କରାଗଲା । ଘର ଖର୍ଚ୍ଚପାଇଁ ଲୋକଙ୍କୁ ଲୁଣ

ମାରିବାପାଇଁ ଅନୁମତି ଦିଆଗଲା ନାହିଁ । ୧୮୦୪ରେ କମ୍ପାନୀ ସରକାର ଓଡ଼ିଶାରେ ଲୁଣମରା ବ୍ୟବସାୟ ହାତକୁ ନେଲେ ।

ସ୍ଥାନୀୟ ଲୁଣ ରେଗୁଲେସନ କଲିକତାର ବୋର୍ଡ ଅଫ୍ ଟ୍ରେଡ୍ ଦ୍ୱାରା କାର୍ଯ୍ୟକାରୀ କରାଗଲା । ଲୁଣ ଏଜେଣ୍ଟମାନେ ନିଯୁକ୍ତ ହେଲେ । ଲୁଣ ଉତ୍ପାଦନ ତଦାରଖ କରିବା ଓ ଲୋକଙ୍କୁ ଯୋଗାଇବା ସେମାନଙ୍କର କାମ ହେଲା । ସରକାରଙ୍କ ପକ୍ଷରୁ ଲୁଣ ଆମଦାନୀ କରାଯାଇ ବିକ୍ରୟ କରାଗଲା । ବିକ୍ରୟ ପୂର୍ବରୁ ସେଗୁଡ଼ିକୁ ଗୋଲାମାନଙ୍କରେ ଗଚ୍ଛିତ କରାଯାଉଥିଲା । ସେଗୁଡ଼ିକୁ ଓଡ଼ିଶା ବାହାରେ ଅତ୍ୟଧିକ ଦରରେ ବିକ୍ରି କରାଗଲା । ଲବଣ ଅମଲାମାନେ ଲବଣ ବ୍ୟବସାୟରୁ ଫାଇଦା ନେଇ ଲୁଣ ଦର ବଢ଼ାଇବାରେ ଲାଗିଲେ । ଫଳରେ ଲୁଣର ଦର ବଢ଼ିଗଲା । ମରାଠା ରାଜତ୍ୱକାଳରେ ଲୁଣ ମହଣ ସାଢ଼େ ୩ ଅଣାରୁ ଚାରି ଅଣା ଥିଲା । ମାତ୍ର ଲୁଣ ମହଣ ବ୍ରିଟିଶ ରାଜତ୍ୱରେ ୨ ଟଙ୍କାକୁ ବଢ଼ିଗଲା । ତା'ର ପରବର୍ତ୍ତୀ ସମୟରେ ଲୁଣ ଦର ଏପରି ବଢ଼ିଲା ଯେ ୩ ଟଙ୍କା ଦେଲେ ବି ମହଣେ ଲୁଣ ମିଳିଲା ନାହିଁ । ଗାଁ ଗଣ୍ଡା ମଫସଲରେ ଲୁଣ ଦୁଃଷ୍ପ୍ରାପ୍ୟ ହୋଇପଡ଼ିଲା । ଗରିବ ଲୋକେ ନିଜର ବ୍ୟବହାର କରିବାକୁ ସମର୍ଥ ହେଲେ ନାହିଁ ।

ଚାଉଳ ଭଳି ଲୁଣ ଏକ ନିତ୍ୟ-ବ୍ୟବହାର୍ଯ୍ୟ ଜିନିଷ ହୋଇଥିବାବେଳେ ତା'ର ମୂଲ୍ୟ ବୃଦ୍ଧି ହେତୁ ଜନଅସନ୍ତୋଷ ବୃଦ୍ଧି ପାଇବା ସ୍ୱାଭାବିକ ।

ସେତେବେଳକାର କଲେକ୍ଟର ବଙ୍ଗଳା ସରକାରଙ୍କୁ ଜଣାଇଲେ ଯେ କେବଳ ଚଢ଼ା ଦରପାଇଁ ଯେ ଲୋକେ ପାଟିତୁଣ୍ଡ କରୁଛନ୍ତି ତାହା ନୁହେଁ, ସାଧାରଣ ଲୋକେ ଅର୍ଥାତ୍ ତଳ ସ୍ତରର ଲୋକେ ଲୁଣ କିଣିବାକୁ ପାଉ ନାହାନ୍ତି । ଯେଉଁମାନଙ୍କ ପାଖରେ ପଇସା ଅଛି ସେମାନଙ୍କୁ ମଧ୍ୟ ଲୁଣ କିଣିବାକୁ ମିଳୁ ନାହିଁ ।

ଇଂରେଜ ଶାସକ ଇମ୍ପେ ମଧ୍ୟ ଜଣାଇଲେ ଯେ ଲୁଣର ଏକଚାଟିଆ ବ୍ୟବସାୟ ପ୍ରବର୍ତ୍ତନ ଫଳରେ ଲୋକେ ଲୁଣ ପରି ଏକ ଅତ୍ୟାବଶ୍ୟକୀୟ ଜିନିଷରୁ ବଞ୍ଚିତ ବା ଲୁଣ ବ୍ୟାବହାରିକ କଟକଣାରେ ବ୍ୟଥିତ ହୋଇପଡ଼ିଛନ୍ତି ।

ଏକଚାଟିଆ ଲୁଣ ବ୍ୟବସାୟ ପ୍ରବର୍ତ୍ତନ ଫଳରେ ଓଡ଼ିଶା ଉପକୂଳର ପ୍ରାୟ ସତର-ଅଠର ହଜାର ଲୋକ ସେମାନଙ୍କର ଜୀବିକା ହରାଇ ତଳିତଳାନ୍ତ ହୋଇଗଲେ ।

## (ଗ) କଉଡ଼ି ମୁଦ୍ରାର ହ୍ରାସ

ପ୍ରାଚୀନ କାଳରୁ କଉଡ଼ି ଏକ ମୁଦ୍ରା ରୂପେ ବ୍ୟବହୃତ ହେଉଥିଲା । କିଣା ବିକା, ଖଜଣା ଦିଆ ପ୍ରଭୃତି କଉଡ଼ି ମାଧ୍ୟମରେ ହେଉଥିଲା । ରାଜ୍ୟର ଆୟ ଏପରିକି

କଉଡ଼ିଦ୍ୱାରା ନିର୍ଣ୍ଣୀତ ହେଉଥିଲା । ଜମିଦାର ହେଉ ବା ପ୍ରଜା ହେଉ, ସମସ୍ତେ ଖଜଣା କଉଡ଼ିରେ ପଇଠ କରୁଥିଲେ ।

ପ୍ରତି ବର୍ଷ ମାଳଦ୍ୱୀପରୁ ଜାହାଜରେ କଉଡ଼ି ଆମଦାନୀ କରାଯାଉଥିଲା ।

ମରହଟ୍ଟା ରାଜତ୍ୱ ସମୟରେ ରାଜସ୍ୱର ପରିମାଣ କଉଡ଼ି ମୁଦ୍ରାରେ ନିର୍ଦ୍ଧାରଣ କରାଯାଉଥିଲା । ମରହଟ୍ଟା ସୈନ୍ୟମାନଙ୍କୁ ମଧ୍ୟ କଉଡ଼ି ମୁଦ୍ରାରେ ଦରମା ଦିଆଯାଉଥିଲା । ରୁପା ଟଙ୍କା ଓ ତମ୍ବା ମୁଦ୍ରାର ପ୍ରଚଳନ ଥିଲେ ବି କଉଡ଼ି ମୁଦ୍ରା କାରବାର ହିଁ ବେଶି ଥିଲା ।

ଓଡ଼ିଶା ଦଖଲ କରିବା ପରେ ବ୍ରିଟିଶ ଶାସକ କଉଡ଼ି ପ୍ରଳଚନକୁ ପସନ୍ଦ କଲେ ନାହିଁ । ସେମାନଙ୍କୁ ତାହା ଏକ ପୁରୁଣାକାଳିଆ ବ୍ୟବସ୍ଥା ବୋଲି ମନେ ହେଲା । ଅଧିକୃତ ଅନ୍ୟ ରାଜ୍ୟରେ ସେମାନେ ରୌପ୍ୟ ମୁଦ୍ରାରେ ଖଜଣା ଆଦାୟ କରୁଥିଲେ । ଅର୍ଥ ବିନିମୟ ଦୃଷ୍ଟିରୁ ଏହା ମଧ୍ୟ ସୁବିଧାଜନକ ଥିଲା । ଲଣ୍ଡନସ୍ଥିତ ଘରୋଇ ସରକାରଙ୍କ ସଙ୍ଗେ ଆର୍ଥନୀତିକ ସମ୍ପର୍କକୁ ଏହା ସରଳୀକରଣ କରିପାରୁଥିଲା । ତେଣୁ ବ୍ରିଟିଶ ସରକାର କଉଡ଼ି ପରିବର୍ତ୍ତେ ରୌପ୍ୟ ମୁଦ୍ରା ପ୍ରଚଳନ କରିବାକୁ ସ୍ଥିର କଲେ ।

୧୮୦୪ ଖ୍ରୀଷ୍ଟାବ୍ଦରେ କଉଡ଼ି ମୁଦ୍ରାରେ ରାଜସ୍ୱର ପରିମାଣ ନିରୂପିତ ହେଲା ଓ ଟଙ୍କା ମୁଦ୍ରାରେ ରାଜସ୍ୱ ଆଦାୟ ହେଲା । ଟଙ୍କାର ବିନିମୟ ମୂଲ୍ୟ ଚାରି କାହାଣ ଦୁଇ ପଣ ହେଲା ।

୧୮୦୫ ଖ୍ରୀଷ୍ଟାବ୍ଦ ୧୨ ନଭେମ୍ବର ରେଗୁଲେସନ୍ ଅନୁସାରେ ୧୮୦୮ ଅକ୍ଟୋବର ମାସ ପର୍ଯ୍ୟନ୍ତ ଜମିଦାରମାନେ ରାଜସ୍ୱ ଦେୟ କଉଡ଼ି ମୁଦ୍ରାରେ ଦେବାର ଅଧିକାର ପାଇଲେ । ବହୁ ଜମିଦାର କିନ୍ତୁ ଏହି ସୁଯୋଗ ଉପଯୋଗ କରିପାରି ନ ଥିଲେ । କଉଡ଼ିର ଅଭାବ ଥିଲା ତା'ର କାରଣ । ବ୍ରିଟିଶ ଶାସନ ସମୟରେ ଓଡ଼ିଶା ରାଜ୍ୟ ବାହାରୁ ବିଶେଷତଃ ମାଳଦ୍ୱୀପରୁ କଉଡ଼ି ଆମଦାନୀ କରିବାକୁ ବ୍ୟବସାୟୀମାନେ ଉତ୍ସାହିତ ହେଲେ ନାହିଁ ।

୧୮୦୮ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ଖଜଣା କଉଡ଼ିରେ ଦାଖଲ ବାରଣ କରିଦେଲେ । ସରକାର ନିର୍ଦ୍ଦେଶ ଦେଲେ ଯେ ଲୋକେ ଖଜଣା ରୌପ୍ୟମୁଦ୍ରାରେ ଅର୍ଥାତ୍ ସିକା ଟଙ୍କାରେ ଦେବେ । ଫଳରେ କଉଡ଼ିର ପୂର୍ବ ମୂଲ୍ୟର ଅଧୋଗତି ହେଲା । ରୌପ୍ୟ ମୁଦ୍ରାର ଚାହିଦା ବଢ଼ିଲା । କିନ୍ତୁ ଖଜଣା ଦେବାକୁ ସାଧାରଣ ଲୋକମାନେ କଉଡ଼ି ବଦଳରେ ଯେତିକି ଟଙ୍କା ଆବଶ୍ୟକ କଲେ ତାହା ମିଳିଲା ନାହିଁ । ରୌପ୍ୟ ମୁଦ୍ରାର ଯଥେଷ୍ଟ ଅଭାବ ଦେଖାଦେଲା । ତା'ର ଦୁଇଟି କାରଣ ଥିଲା । ପ୍ରଥମଟି ହେଲା, ସିକା ଟଙ୍କାର ଆମଦାନୀର କ୍ରମିକ ହ୍ରାସ । ଓଡ଼ିଶାରୁ

ବଙ୍ଗଳାକୁ ବା ନାଗପୁରକୁ ଲୁଣ ରପ୍ତାନୀ ପୂରାପୂରି ବନ୍ଦ କରିଦେବା ଫଳରେ ସେଠାରୁ ରୌପ୍ୟ ମୁଦ୍ରା ଆସିବାର ସମ୍ଭାବନା ରହିଲା ନାହିଁ । ଦ୍ୱିତୀୟଟି ହେଲା, ରୁପାର ରପ୍ତାନୀ ବୃଦ୍ଧି । ବ୍ରିଟିଶ ଶାସନକାଳରେ ଲକ୍ଷ ଲକ୍ଷ ରୁପା ଟଙ୍କା କଲିକତାକୁ ପଠାଯାଇଥିଲା । ଫଳରେ କଉଡ଼ିର ମୂଲ୍ୟ ହ୍ରାସ ପାଇଲା । କଉଡ଼ିଦ୍ୱାରା ଜିନିଷ କିଣିବାର ଶକ୍ତି ମଧ ହ୍ରାସ ପାଇଲା । ଯେଉଁ ଜିନିଷ କିଣିବାକୁ ୧୦ କଉଡ଼ି ଦିଆଯାଉଥିଲା, ସେହି ଜିନିଷ କିଣିବାକୁ ୧୫ କଉଡ଼ି ଦେବାକୁ ପଡ଼ିଲା । କଟକ ବଜାରରେ କଉଡ଼ି ମାଧ୍ୟମରେ ଜିନିଷର ଦାମ୍ ୫୦ ପ୍ରତିଶତ ବଢ଼ିଯାଇଥିଲା ।

ସିକା ଟଙ୍କାରେ ରାଜସ୍ୱ ଦେୟ ଦେବାକୁ ପଡ଼ିବାରୁ ଲୋକେ ଭୟଙ୍କର ଅସୁବିଧାର ସମ୍ମୁଖୀନ ହେଲେ । ଟଙ୍କାକୁ ଚାରି କାହାଣ କଉଡ଼ି ଧାର୍ଯ୍ୟ ହୋଇଥିଲେ ମଧ ବଜାରରେ ଟଙ୍କାକୁ ସାତ କାହାଣ ହୋଇଗଲା । ପ୍ରଜା ଓ ଜମିଦାରମାନେ ଟଙ୍କା ସଂଗ୍ରହପାଇଁ ସରକାରୀ ମୂଲ୍ୟ ଚାରି କାହାଣ ସ୍ଥଳେ ସାତ କାହାଣ ଦେବାକୁ ବାଧ ହେଲେ । ଏହି ବିନିମୟ ହାର ଯୋଗୁଁ ପ୍ରଜାମାନଙ୍କୁ ପ୍ରାୟ ଦୁଇ ଗୁଣ ରାଜସ୍ୱ ଦେବାକୁ ପଡ଼ିଲା । ସମୟ ସମୟରେ ସାତ କାହାଣରୁ ମଧ ଅଧିକ ଦେବାକୁ ପଡୁଥିଲା । କି ପ୍ରଜା, ଜମିଦାର ଓ ଜାଗିରିଦାରମାନେ ଭୀଷଣ କ୍ଷତିଗ୍ରସ୍ତ ହେଲେ ।

ବହୁ କାଳରୁ କଉଡ଼ି ମୁଦ୍ରାର ପ୍ରଚଳନ ଥିବାରୁ ମହାଜନମାନେ ଭବିଷ୍ୟତ୍‌ରେ କଉଡ଼ିର ପ୍ରଚଳନ ହେବ ବୋଲି ଆଶା କରିବା ସ୍ୱାଭାବିକ । ସେମାନେ ତେଣୁ ପାଖରେ ଥିବା କଉଡ଼ିକୁ ମାଟି ତଳେ ପୋତି ରଖିଥିଲେ । କିନ୍ତୁ କଉଡ଼ିର ପ୍ରଚଳନ ବନ୍ଦ ହୋଇଯିବାରୁ ସେମାନେ ମଧ କ୍ଷତିଗ୍ରସ୍ତ ହେଲେ ।

## (ଘ) ବିଚାର ବିଭାଗରେ ପରିବର୍ତ୍ତନ

ଇଂରେଜ ଶାସନ କାଳ ପୂର୍ବରୁ ବିଚାର ବିଭାଗ ପ୍ରଣାଳୀ ଅତି ସରଳ ଥିଲା । ତଳ ସ୍ତରରେ ଗ୍ରାମ ପଞ୍ଚାୟତ ପାଖରେ ବିଚାର କରାଯାଉଥିଲା । ପକ୍ଷମାନଙ୍କ ସମ୍ମତିରେ ୫ଜଣ ବ୍ୟକ୍ତିଙ୍କୁ ମନୋନୀତ କରାଯାଉଥିଲା । ପଞ୍ଚାୟତ ବାଛିବାରେ କୌଣସି ବିବାଦ ଦେଖାଦେଲେ ଜମିଦାର ବା ରାଜାମାନେ ନିର୍ଦ୍ଦେଶ ଦେଉଥିଲେ । କୌଣସି ପକ୍ଷ ପଞ୍ଚାୟତ ନିଷ୍ପତ୍ତିରେ ସନ୍ତୁଷ୍ଟ ନ ହେଲେ, ସେ ଜମିଦାର ବା ରାଜାଙ୍କ ନିକଟରେ ନ୍ୟାୟ ପାଇବାପାଇଁ ଆବେଦନ କରିପାରୁଥିଲେ । ସ୍ଥାନୀୟ ଲୋକମାନଙ୍କ ସାକ୍ଷ୍ୟ ଓ ଖବର ଉପରେ ବିଚାର ହେବା ଫଳରେ ସତ୍ୟତା ପ୍ରତିପାଦନ କରିବା ସହଜ ହେଉଥିଲା । ନ୍ୟାୟ ପାଇବାପାଇଁ ବେଶି ଖର୍ଚ୍ଚ କରିବାକୁ ପଡୁ ନ ଥିଲା । ରାୟ ମଧ ଶୀଘ୍ର ମିଳୁଥିଲା । ସ୍ଥାନୀୟ ଭାଷାରେ ବିଚାର ହେଉଥିବାରୁ ପେସାଦାର ଓକିଲଙ୍କ ଉପରେ ନିର୍ଭର କରିବାକୁ ପଡୁ ନ ଥିଲା ।

ଦଣ୍ଡ ବିଧି ମଧ୍ୟ କଠୋର ନ ଥିଲା । ପ୍ରାୟ ଦୋଷୀକୁ ଜୋରିମାନା ଦେବାକୁ ପଡୁଥିଲା । ବଡ଼ଧରଣର ବା ଗୁରୁତର ଅପରାଧପାଇଁ ଅଙ୍ଗହାନି ଦଣ୍ଡ ଦିଆଯାଉଥିଲା । ପ୍ରକୃତ ଦୋଷୀକୁ ମଧ୍ୟ ଦଣ୍ଡ ତତ୍‌କ୍ଷଣାତ୍ ଭୋଗ କରିବାକୁ ପଡୁଥିଲା ।

ଅପରାଧୀକୁ ଘୃଣା କରାଯାଉଥିଲା । ତେଣୁ ଅପରାଧ ବା ଅପରାଧୀଙ୍କ ସଂଖ୍ୟା ନଗଣ୍ୟ ଥିଲା । କର୍ଣ୍ଣେଲ ହାରକୋର୍ଟ ଓଡ଼ିଶାରେ ଶାନ୍ତି ଶୃଙ୍ଖଳାପ୍ରତି ଦୃଷ୍ଟି ଦେଇ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ । ସେ ଉପରିସ୍ଥ କର୍ମକର୍ତ୍ତାଙ୍କୁ ଜଣାଇଥିଲେ – ‘‘ଓଡ଼ିଆମାନେ ଶାନ୍ତିକାମୀ, ଏଠାରେ ଡକାୟତି ଅଜଣା ଏବଂ ଜଘନ୍ୟ ଅପରାଧ ପ୍ରାୟ ନାହିଁ । ତେଣୁ ଦଣ୍ଡବିଧାନର ବ୍ୟବସ୍ଥା ଅତି ନ୍ୟୂନ ବା ନଗଣ୍ୟ ।’’

ଇଂରେଜମାନେ ଓଡ଼ିଶା ଅଧିକାର କଲା ପରେ ତାଙ୍କ ଦେଶରେ ଯେଉଁ ବିଚାର ପଦ୍ଧତି ଥିଲା ତାହାକୁ ଏଠାରେ ପ୍ରବର୍ତ୍ତନ କଲେ । ସ୍ଥାନୀୟ ବିଚାର ପଦ୍ଧତିକୁ ବୁଝିଲେ ନାହିଁ କି ବୁଝିବାକୁ ଚେଷ୍ଟା କଲେ ନାହିଁ । ଓଡ଼ିଶା ବ୍ରିଟିଶମାନେ ଅଧିକାର କରିବା ସମୟରେ ବହୁ ଦକ୍ଷ ଓ ଅନୁଭୂତିସମ୍ପନ୍ନ ଓଡ଼ିଆ ଅଫିସର ବା କର୍ମଚାରୀମାନଙ୍କର ଅଭାବ ନ ଥିଲା । ସେମାନଙ୍କୁ ତାଲିମ ଦେଇ ଶାସନ କ୍ଷେତ୍ରରେ ନିଯୁକ୍ତ କରାଯାଇପାରିଥାନ୍ତା । ନୂଆ ରେଗୁଲେସନ୍ ବା କାନୁନ୍‌କୁ ଅନୁବାଦ କରାଯାଇ ପାରିଥାନ୍ତା ! ମାତ୍ର ବ୍ରିଟିଶ କର୍ତ୍ତୃପକ୍ଷ ଓଡ଼ିଆମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ଉପେକ୍ଷା କଲେ । ଏପରିକି ନିମ୍ନ ସ୍ତରର ଚାକିରି ପାଇବାପାଇଁ ସେମାନେ ଯୋଗ୍ୟ ବିବେଚିତ ହେଲେ ନାହିଁ ।

ବିଚାର ବିଭାଗରେ ଇଂରେଜ ବିଚାରପତିମାନେ ନିଯୁକ୍ତ ହେଲେ । ସେମାନେ ପକ୍ଷମାନଙ୍କ କଥା ବୁଝିପାରୁ ନ ଥିଲେ । ଫଳରେ ସମ୍ପୂର୍ଣ୍ଣଭାବେ ଅଣଓଡ଼ିଆ ଅମଲାମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିଲା । ଅଣଓଡ଼ିଆ ଓକିଲମାନେ ଓଡ଼ିଆ ମହକିଲମାନଙ୍କୁ ଶୋଷଣ କରିବାରେ ଲାଗିଲେ । ମହମଦ ଫିଜ ନାମକ ଜଣେ ଅଣଓଡ଼ିଆ ଓକିଲ ଅସତ୍ ଉପାୟରେ ପ୍ରଚୁର ଅର୍ଥ ଠୁଳ କରି ରଖିଥିଲେ । ତାଙ୍କୁ ସରକାରୀ ଓକିଲ ପଦବୀରୁ ବହିଷ୍କାର କରାଗଲା । ବହିଷ୍କୃତ ହେଲେ ମଧ୍ୟ ବେସରକାରୀ ଓକିଲଭାବେ କଚେରିରେ କାର୍ଯ୍ୟ ସେ କଲେ ଓ ଅଜସ୍ର ଅର୍ଥ ଉପାର୍ଜନ କରିବାକୁ କ୍ଷମ ହେଲେ । ଲୁଣ ବିଭାଗରେ ସାଲିମ୍ ଅଲ୍ଲୀ ଉଚ୍ଚ ପଦବୀରେ ଥିଲେ । ତହବିଲ ତୋଷରପାତ କରିବା ତାଙ୍କର ବେଉସା ହେଲା । ପୁଣି ଟଙ୍କା ଲାଞ୍ଚ ନେଇ ଛୋଟ ଛୋଟ ଚାକିରି ଦେଇଚାଲିଲେ । ଅଜସ୍ର ଧନ ହେବାରୁ ସେ ବହୁ ଜମି ତାଙ୍କ ପୁତୁରାଙ୍କ ନାମରେ କ୍ରୟ କରିଥିଲେ ।

ଫଳରେ ସ୍ଥାନୀୟ ଅଧିବାସୀମାନଙ୍କର ଦୁଃଖ-ଦୁର୍ଦ୍ଦଶା ବୃଦ୍ଧି ପାଇଲା ।

## (ଢ) ପୋଲିସ ଅତ୍ୟାଚାର

୧୮୦୬ ଖ୍ରୀଷ୍ଟାବ୍ଦ ମେ ମାସ ୧ ତାରିଖରୁ ରାଜ୍ୟରେ ୧୬ଟି ଥାନା ପ୍ରତିଷ୍ଠା ହେଲା । ପ୍ରତି ଥାନାରେ ଜଣେ ଦାରୋଗା, ଜଣେ ମୋହରିର, ଜଣେ ଜମାଦାର ଓ ୧୦ ଜଣ ବରକନ୍ଦାଜ (ବନ୍ଧୁକଧାରୀ ପୁଲିସ) ନିଯୁକ୍ତ ହେଲେ । ପୋଲିସକୁ ନିୟନ୍ତ୍ରଣ କରିବାପାଇଁ ଜଣେ ମାଜିଷ୍ଟ୍ରେଟ୍ ନିଯୁକ୍ତ ହେଲେ । ପ୍ରାୟ ଅଣଓଡ଼ିଆମାନେ ପୋଲିସ ବିଭାଗରେ ଦାରୋଗା ପଦରେ ନିଯୁକ୍ତ ହେଲେ । ସେହି ଦାରୋଗାମାନେ ସ୍ୱେଚ୍ଛାଚାରୀ ଥିଲେ । ସେମାନେ ମଧ୍ୟ ଅତ୍ୟାଚାରୀ ଥିଲେ । ସେମାନଙ୍କ ଅତ୍ୟାଚାର, ଶୋଷଣର ସୀମା ରହିଲା ନାହିଁ । ପୋଲିସ ଅତ୍ୟାଚାରର ଏକ ନମୁନାରୂପେ ମିର୍ଜା ମେହେଦିଙ୍କୁ ନିଆଯାଇପାରେ । ସେ ପୋଲିସ ଦାରୋଗାଭାବେ ପ୍ରଥମେ ପୁରୀରେ ନିଯୁକ୍ତି ପାଇଥିଲେ । ତାଙ୍କର ଦୌରାତ୍ମ୍ୟ ଓ ଅତ୍ୟାଚାର ଏପରି ଅସହ୍ୟ ହେଲା ଯେ ସେଠାକାର ଅଧିବାସୀମାନେ ମାଜିଷ୍ଟ୍ରେଟଙ୍କ ପାଖେ ଅଭିଯୋଗ କଲେ ଯେ ସେମାନଙ୍କର ଅଭିଯୋଗର ଯଦି କୌଣସି ପ୍ରତିକାର କରା ନ ଯାଏ, ସେମାନେ କଲିକତା ଯାଇ ଗଭର୍ଣ୍ଣରଙ୍କ ପାଖକୁ ଯିବାକୁ ବାଧ୍ୟ ହେବେ । ଫଳରେ ତାଙ୍କୁ ବଦଳି କରାଯାଇ ଖୋରଧା ପଠାଗଲା । ଖୋରଧାରେ ମଧ୍ୟ ତାଙ୍କର ଦୌରାତ୍ମ୍ୟ ଓ ଅତ୍ୟାଚାର ବଢ଼ିଚାଲିଲା ।

ଖୋରଧାର ତୁମୋ ଗ୍ରାମରେ ଦାରୋଗା କିପରି ଭାବରେ ପ୍ରତ୍ୟେକ ବ୍ୟକ୍ତିଙ୍କଠାରୁ ବିଭିନ୍ନ ବାବଦରେ ଅର୍ଥ ଆଦାୟ କରୁଥିଲେ ତା'ର ତାଲିକା ଦିଆଗଲା ।

ପ୍ରତ୍ୟେକ ଲୋକ ଦାରୋଗାଙ୍କୁ ଦେଖା କଲେ ସଲାମୀ ଦୁଇ ଅଣା ଦେବାକୁ ପଡୁଥିଲା । କେହି କୁକୁଡ଼ା ବା ଛେଳି ରଖିଲେ ୨ $\frac{୧}{୨}$ ଅଣା ଦେଉଥିଲେ । ଗ୍ରାମ ଚାନ୍ଦା ବାବଦ ଆଠ ଅଣା ଦେବାକୁ ପଡୁଥିଲା । ଗ୍ରାମର ସୀମା ନିର୍ଦ୍ଧାରଣପାଇଁ ପ୍ରତ୍ୟେକ ବ୍ୟକ୍ତିଙ୍କୁ ୪ ଅଣା ଦେବାକୁ ପଡୁଥିଲା । ଯଦି କୌଣସି ବ୍ୟକ୍ତି କୂଅରେ ପଡ଼ି ମରିଗଲେ, ତା'ର ଘର ଲୁଟି ନିଆଯାଉଥିଲା । ଏହାଛଡ଼ା ଗ୍ରାମର ପ୍ରତ୍ୟେକ ପରିବାରକୁ ଛଅ ଅଣା ଦେବାକୁ ପଡୁଥିଲା । ସାପ କାମୁଡ଼ାରେ କେହି ବ୍ୟକ୍ତି ମରିଗଲେ ମୃତବ୍ୟକ୍ତିର ଘର ଲୁଟି ନିଆହେଉଥିଲା ଓ ପ୍ରତ୍ୟେକ ପରିବାରଙ୍କୁ ୬ ଅଣା ଦେବାକୁ ପଡୁଥିଲା । ଯାହା ଘରେ ସିନ୍ଧିଗାତ ହେଲା, ସେ ଘର ମାଲିକକୁ ଟଙ୍କା ଦେବାକୁ ପଡୁଥିଲା । ଦାରୋଗାଙ୍କ ଖାଦ୍ୟଶସ୍ୟ ଭରଣାପାଇଁ ପ୍ରତ୍ୟେକଙ୍କୁ ୩ ଅଣା ଦେବାକୁ ପଡୁଥିଲା । ଦାରୋଗାଙ୍କ ଘରେ ଗରମ ଋତୁରେ ବେଣାଚେର ପରଦା ଲଗାଇବାପାଇଁ ଏକ ଅଣା ଦୁଇ ପାହୁଲା ଦେବାକୁ ପଡୁଥିଲା । ଦାରୋଗାଙ୍କପାଇଁ ମହୁ, ମହମ ଇତ୍ୟାଦି ଜିନିଷ କିଣିବାପାଇଁ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଏକ ଅଣା ଦେବାକୁ ହେଉଥିଲା । ଦାରୋଗାଙ୍କୁ

ସ୍ଥାୟୀ ବାସିନ୍ଦାମାନେ ବିନା ବେତନରେ କାର୍ଯ୍ୟ ଓ ବିନା ମୂଲ୍ୟରେ ଜିନିଷ ଯୋଗାଇ ଦେବାକୁ ବାଧ୍ୟ ହେଉଥିଲେ । ଦାରୋଗା ଭଲ ପାଉ ନ ଥିବା ବ୍ୟକ୍ତିକୁ ୨ଟଙ୍କା ଜୋରିମାନା ହେଉଥିଲା ।

ବ୍ରିଟିଶ ଶାସନରେ କଟକରେ ଅବସ୍ଥାପିତ ଟ୍ରାଓ୍ୟାର ଓଡ଼ିଶାର ଗ୍ରାମାଞ୍ଚଳ ଭ୍ରମଣକରି ପୋଲିସ ଅତ୍ୟାଚାରର ଅଭିଯୋଗ ପରେ ଅଭିଯୋଗ ପାଇ ମତ ଦେଇଥିଲେ – ''କମ୍ପାନୀର ସମସ୍ତ ରାଜ୍ୟ ମଧ୍ୟରେ ଓଡ଼ିଶାହିଁ ଏ ବିଷୟରେ (ପୋଲିସ ଅତ୍ୟାଚାର ସମ୍ପର୍କରେ) ସବୁଠାରୁ ଅଭାଗ୍ୟ ଅଞ୍ଚଳ ।''

ଓଡ଼ିଶାର ସାମରିକ କମାଣ୍ଡର ଜି. ମାର୍ତ୍ତିଣ୍ଡେଲ ବିଦ୍ରୋହ ସମୟରେ ଲେଖିଥିଲେ ଯେ ସ୍ଥାନୀୟ ବିଚାର ବିଭାଗ, ପୋଲିସ ବା ରାଜସ୍ୱ ବିଭାଗ ଅଫିସରମାନଙ୍କର ଦୌରାତ୍ମ୍ୟ, ଜବରଦସ୍ତ ଅନ୍ୟାୟ ଦାବି ଓ ବଳପୂର୍ବକ ଉତ୍କୋଚ ଗ୍ରହଣ ଗୋଟାଏ ସାଧାରଣ ବ୍ୟବସାୟରେ ପରିଣତ ହୋଇଥିଲା ।

୧୮୧୭ ବିଦ୍ରୋହର କାରଣ ସମ୍ପର୍କରେ ଅନୁସନ୍ଧାନ କରୁଥିବା ଇଓ୍ୱାର ମଧ୍ୟ ମନ୍ତବ୍ୟ ଦେଇଥିଲେ ଯେ ରାଜ୍ୟରେ ଖୁରୁଧା ରାଜାଙ୍କର ପିତୃତୁଲ୍ୟ ପ୍ରଭୁତ୍ୱ ପରିବର୍ତ୍ତେ ଜଜ୍, କଲେକ୍ଟର ଓ ଅତ୍ୟାଚାରୀ ପୁଲିସ୍ ଦାରୋଗାଙ୍କ ଶାସନ ପ୍ରବର୍ତ୍ତିତ ହେଲା ।

## (ଚ) ପାଇକକୁଳର ଧ୍ୱଂସସାଧନ

ବହୁ ପ୍ରାଚୀନ କାଳରୁ ଦଳବେହେରା, ଦଳାଇ, ପାଇକ ପ୍ରଭୃତି ସାମରିକ ଶାସନ ବିଭାଗ ମୁଖ୍ୟ ଥିଲେ । ସେମାନେ ଯୁଦ୍ଧବିଦ୍ୟାରେ ନିପୁଣ ଥିଲେ । ତେଣୁ ବଂଶାନୁକ୍ରମିକ ଭାବେ ଜାଗିରି ଜମି ଉପଭୋଗ କରୁଥିଲେ । ସେମାନଙ୍କ ଜାଗିରି ବା ଇଷ୍ଟେଟ୍ ମଧ୍ୟରେ ଗୋଟିଏ ଗୋଟିଏ ଇଟା, ମାଟି ବା ପଥର ନିର୍ମିତ ଗଡ଼ ଥିଲା । ସେମାନେ ସେହି ଗଡ଼ ମଧ୍ୟରେ ରହୁଥିଲେ । ନିଷ୍କର ଚାଷଜମି ଚାଷ କରି ଜୀବିକାର୍ଜନ କରୁଥିଲେ । ଯୁଦ୍ଧ ବେଳେ ଗଜପତିଙ୍କ ସୈନ୍ୟମାନଙ୍କ ସହିତ ମିଶି ଶତ୍ରୁ ବିରୋଧରେ ଲଢୁଥିଲେ ।

ପ୍ରତ୍ୟେକ ଗଡ଼ରେ ଗୁଡ଼ିଏ ପାଇକ ଅବସ୍ଥାପିତ ଥିଲେ । ଏହି ପାଇକମାନେ ସେମାନଙ୍କ ମୁଖ୍ୟଙ୍କ ନିର୍ଦ୍ଦେଶ ପାଳନ କରୁଥିଲେ । ସେମାନେ ପ୍ରାୟ ନିଷ୍କର ଜମି ଉପଭୋଗ କରୁଥିଲେ । କେତେକଙ୍କୁ ବେତନ ମଧ୍ୟ ଦିଆଯାଉଥିଲା ।

ପୂର୍ବତନ ମୋଗଲ ବା ମରାଠା ସରକାର ଦଳବେହେରା ବା ଦଳାଇ ପ୍ରଭୃତି ସାମରିକ ମୁଖ୍ୟଙ୍କ ଜାଗିରି ଭୂମିରେ ଆଦୌ ହସ୍ତକ୍ଷେପ କରୁ ନ ଥିଲେ । କିନ୍ତୁ ଇଂରେଜମାନେ ଏହି ପ୍ରଥା ଅବଲମ୍ବନ କରି ନ ଥିଲେ । ସେମାନେ ଏହି ସାମରିକ କର୍ମଚାରୀମାନଙ୍କୁ ନିଯୁକ୍ତି ଦେଇ ନ ଥିଲେ । ସେମାନଙ୍କ ମତରେ ଏହି ସାମରିକ

କର୍ମଚାରୀମାନେ ରୟତଙ୍କଠାରୁ ଭିନ୍ନ ନୁହନ୍ତି । ତେଣୁ ସେମାନଙ୍କୁ ରଖିବା ଅନାବଶ୍ୟକ । ଶାସକମାନଙ୍କ ଯୁକ୍ତି ହେଲା ଯେ ସୈନ୍ୟସାମନ୍ତ ମୁତୟନ ସରକାରଙ୍କର ଦାୟିତ୍ୱ । ପୁଣି ସେହି ପୂର୍ବତନ ସ୍ଥାନୀୟ ସାମରିକ ମୁଖ୍ୟମାନଙ୍କର ସାମରିକ କାର୍ଯ୍ୟକଳାପ ଉଜ୍ଜୀବିତ ରଖିବା ଇଂରେଜ ସରକାରଙ୍କ ଶାସନ ପ୍ରତି ବିପଜ୍ଜନକ ହୋଇପାରେ ବୋଲି ତାଙ୍କର ଧାରଣା ହେଲା । ଅଣଓଡ଼ିଆ କର୍ମଚାରୀଙ୍କ ଚକ୍ରାନ୍ତ ଯୋଗୁଁ ପାଇକମାନେ ଇଂରେଜ ସୈନ୍ୟ ବିଭାଗରେ ଅନ୍ତର୍ଭୁକ୍ତ ହେବା ସମ୍ଭବ ନ ଥିଲା ।

୧୮୦୪ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଖୋରଧାକୁ ଦଖଲ କଲେ ଓ ମେଜର ଫ୍ଲେଚର ଏହାର ଶାସନ ଦାୟିତ୍ୱରେ ରହିଲେ । ପୂର୍ବପୁରୁଷ ଅମଳରୁ ଭୋଗ ଦଖଲ କରି ଆସୁଥିବା ନିଷ୍କର ଜମି ଉପରେ ସେ କରଧାର୍ଯ୍ୟ କଲେ । ଖୋରଧାରେ ସେତେବେଳେ ପ୍ରାୟ ଦଶ ହଜାର ପାଇକ ଥିଲେ । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଜଣେ ଚାଷୀ ବା ରୟତ ଭାବରେ ଧରାଗଲା ଓ ତାଙ୍କର ନିଷ୍କର ଜମିରୁ ବଞ୍ଚିତ କରି ଖଜଣା ଦେବାକୁ ବିଧିବଦ୍ଧ ଭାବେ ଘୋଷଣା କରାଗଲା ।

ଦଳାଇ, ଦଳବେହେରାମାନେ ମଧ୍ୟ ଖଜଣା ଦେବାରୁ ଛାଡ଼ ପାଇଲେ ନାହିଁ । ନିଷ୍କର ଜମିରେ କର ବସିବାରୁ ପାଇକ, ଦଳାଇ ତଥା ଦଳବେହେରାମାନଙ୍କ ମଧ୍ୟରେ ପ୍ରବଳ ଅସନ୍ତୋଷ ଦେଖାଦେଲା ।

ଖୋରଧାର ସେତେବେଳେ ଡେପୁଟି କଲେକ୍ଟର ତଥା ଜଏଣ୍ଟ ମାଜିଷ୍ଟ୍ରେଟ୍ ଥିଲେ ଇଉଲିୟମ ଫରେଷ୍ଟର । ସେ ଇଂଲଣ୍ଡର କୋର୍ଟ ଅଫ୍ ଡାଇରେକ୍ଟରଙ୍କୁ ଏକ ପତ୍ରରେ ଏହି ନିଷ୍କର ଜମି ଖାସ୍ ହେବାର ଭୟାବହ ପରିଣତି ବିଷୟ ଜଣାଇଥିଲେ – ‘‘ମୁଁ ଯେତେବେଳେ ପ୍ରଥମେ ଖୋରଧାର ଶାସନ ଭାର ଗ୍ରହଣ କଲି ସେତେବେଳେ ଏହି ପାଇକ କୁଳର ନିଷ୍କର ଜମି ଖାସ୍ ହେବାକୁ ଅତି କଠୋର ପଦକ୍ଷେପ ବୋଲି ବିଚାର କରିଥିଲି । ସେହି କାରଣରୁ ଖୋରଧାର ଅଧିବାସୀମାନେ ବକ୍ସିଙ୍କ ବିଦ୍ରୋହରେ ଯୋଗ ଦେବାକୁ ଆଗ୍ରହ ଦେଖାଇଥିଲେ ବୋଲି ମୁଁ ଭାବିଥିଲି । ମୁଁ ବର୍ତ୍ତମାନ ମଧ୍ୟ ପାଇକ, ଦଳେଇ, ଦଳବେହେରାମାନଙ୍କର ସମ୍ପୂର୍ଣ୍ଣ ନିଷ୍କର ଜମି ଉପରେ ଖଜଣା ଧାର୍ଯ୍ୟ କରିବା ଅତି କଠୋର ପଦକ୍ଷେପ ବୋଲି ବିଚାର କରୁଛି ।’’

## (ଛ) ରୟତମାନଙ୍କ ଦୁର୍ଦ୍ଦଶା

ବ୍ରିଟିଶ ସରକାରଙ୍କର ରାଜସ୍ୱ ନୀତି ଫଳରେ ଓଡ଼ିଆ ଜମିଦାରମାନେ ତାଙ୍କର ଜମିଦାରୀ ତ ହରାଇଲେ, ସେହି ସରକାର ଅଧିକ ଜମା ପାଇବାପାଇଁ ଅଣଓଡ଼ିଆ ଜମିଦାରଙ୍କୁ ନିଲାମ ଦେଲେ । କିନ୍ତୁ ଅଧିକ ଖଜଣାର ଗୁରୁଭାର ପଡ଼ିଲା ଦୁଃସ୍ଥ ରୟତମାନଙ୍କ ଉପରେ ।

ଅଣଓଡ଼ିଆ ଜମିଦାରମାନେ ରୟତମାନଙ୍କୁ ଅଧିକ ଖଜଣା ଦେବାକୁ ବାଧ୍ୟ କଲେ । ମାତ୍ର ସେମାନେ ତାହା ଦେବାକୁ ସମର୍ଥ ହେଉ ନାହାନ୍ତି ବୋଲି ଜଣାଇଲେ । ତେଣୁ ବର୍ଦ୍ଧିତ ଖଜଣା ଅନାଦେୟ ହୋଇ ରହିଲା । ସେହି ଅନାଦେୟ ଖଜଣା ଆଦାୟପାଇଁ ଅଣଓଡ଼ିଆ ଜମିଦାରମାନେ କୋର୍ଟ କଚେରିର ଆଶ୍ରୟ ନେଲେ । କୋର୍ଟର ଦାବି ମଧ୍ୟ ଦୁର୍ଦ୍ଦଶାଗ୍ରସ୍ତ ରୟତମାନେ ପୂରଣ କରିପାରିଲେ ନାହିଁ । ତେଣୁ ସେମାନଙ୍କୁ ଜେଲଦଣ୍ଡ ଭୋଗ କରିବାକୁ ପଡ଼ିଲା । ଖଜଣା ଦେଇପାରୁ ନ ଥିବା ରୟତକୁ ଜେଲ ଦେଲେ ମଧ୍ୟ ବାକି ପଡ଼ିଥିବା ଖଜଣା ଆଦାୟ ହୋଇପାରିଲା ନାହିଁ । ବ୍ରିଟିଶ କଲେକ୍ଟର ଫାକୁୟାର ଏହି ଜେଲ ଦେବା ବ୍ୟବସ୍ଥାକୁ ନାପସନ୍ଦ କରି ଏକ ରିପୋର୍ଟ ସରକାରଙ୍କୁ ଦେଲେ । ସେଥିରେ ସେ ଲେଖିଥିଲେ – ''ସେମାନଙ୍କୁ (ରୟତମାନଙ୍କୁ) ଜେଲରେ ରଖିଲେ ବାକିଆ ଖଜଣା ମିଳିବାର ତ କୌଣସି ସମ୍ଭାବନା ନାହିଁ, ସେମାନଙ୍କୁ ଜେଲରେ ରଖି ସେମାନଙ୍କର ଖିଆପିଆ ଖର୍ଚ୍ଚହିଁ କେବଳ ବହନ କରିବାକୁ ପଡୁଛି ।''

ଆଉ ଜଣେ ବ୍ରିଟିଶ କର୍ମକର୍ତ୍ତା ମଧ୍ୟ ଜେଲଦଣ୍ଡ ଦେବାଦ୍ୱାରା କିଛି ଫଳ ମିଳିବ ନାହିଁ ବୋଲି ସ୍ପଷ୍ଟ ମତ ଦେଇଥିଲେ ।

ବ୍ରିଟିଶ ନୂଆ ଆଇନ ଅନୁସାରେ ଜମିଦାରର ଗଛ, ମାଛ, ଜଙ୍ଗଲ ଓ ଜାଳେଣି କାଠ ଉପରେ ଅଧିକାର ରହିଲା । କିନ୍ତୁ ଆବହମାନ କାଳରୁ ରୟତର ଜମି ଉପରେ ସ୍ୱତ୍ୱ ଥିଲା । ଗଛ, ମାଛ ପ୍ରଭୃତି ଉପଭୋଗ କରୁଥିଲା । ଫଳରେ ରୟତକୁ ଏସବୁଥିରୁ ବଞ୍ଚିତ ହେବାକୁ ପଡ଼ିଲା ।

ନୂତନ ବଙ୍ଗାଳୀ ଜମିଦାରମାନେ ଖଜଣା ଆଦାୟପାଇଁ ନିଜ ନିଜର ଗୁମାସ୍ତା ନିଯୁକ୍ତକରି ଖଜଣା ଆଦାୟ କଲେ । ଏହି ଗୁମାସ୍ତାମାନେ ଗାଁ ଲୋକଙ୍କ ସୁଖ, ଦୁଃଖ, ସୁବିଧା ଅସୁବିଧା ପ୍ରତି ଦୃଷ୍ଟି ଦେଲେ ନାହିଁ । ସେମାନଙ୍କ ଧମକ, ଔଦ୍ଧତ୍ୟପୂର୍ଣ୍ଣ ବ୍ୟବହାର ଅସହ୍ୟ ହୋଇପଡ଼ିଲା । ରୟତମାନେ ବାଧହୋଇ ରାଜ୍ୟ ଛାଡ଼ି ପଳାଇଲେ ।

ଜମିଦାରୀ ଇଷ୍ଟେଟ୍‌ରେ ଥିବା ରୟତମାନଙ୍କଠାରୁ ଖାସମାହାଲରେ ଥିବା ରୟତ ବା ଚାଷୀଙ୍କ ଅବସ୍ଥା ଆହୁରି ଖରାପ ଥିଲା । ଅତ୍ୟଧିକ ଖଜଣା ଦେଇ ଦେଇ ସେମାନେ ତଳିତଳାନ୍ତ ହୋଇଗଲେ । ବିଶେଷତଃ ଖୋରଧା ଅଞ୍ଚଳର ରୟତମାନେ ବିଶେଷ ଦୁର୍ଦ୍ଦଶାଗ୍ରସ୍ତ ହେଲେ । ସେମାନେ ଅତ୍ୟାଚାର ସହି ନ ପାରି ବହୁସଂଖ୍ୟାରେ ନିକଟବର୍ତ୍ତୀ ଗଡ଼ଜାତ ଅଞ୍ଚଳକୁ ପଳାଇଲେ । ଇଓ୍ୱାରଙ୍କ ହିସାବ ଅନୁସାରେ ୫୦୦୦ରୁ ୬୦୦୦ ପର୍ଯ୍ୟନ୍ତ ରୟତ ପରିବାର ନିଜର ଘରଦ୍ୱାର ଛାଡ଼ି ଚାଲିଯିବାରୁ

ସେ ଅଞ୍ଚଳ ଜନଶୂନ୍ୟ ହୋଇଗଲା । ଯେଉଁମାନେ ଭିଟାମାଟିର ମୋହ ଛାଡ଼ି ନ ପାରି ରହିଲେ ସେମାନେ ଅତି ଦୀନହୀନ ଅବସ୍ଥାରେ ରହିବାକୁ ବାଧ ହେଲେ । ସେମାନେ ଧନସମ୍ପତ୍ତି, ଲୁଗାପଟା, ଆସବାବପତ୍ର, ଶଗଡ଼ ବଳଦ, ବାସନକୁସନ ପ୍ରଭୃତି ବା କେତେବେଳେ ମଧ୍ୟ ସ୍ତ୍ରୀ ପିଲାଙ୍କୁ ବିକ୍ରି କରି ଅତି ଶୋଚନୀୟ ଅବସ୍ଥାରେ ଜୀବନଧାରଣ କରିବାକୁ ବାଧ ହେଲେ ।

କଟକର କଲେକ୍ଟର ଟ୍ରାଓ୍ୱାର ମଧ୍ୟ ସେହି ସିଦ୍ଧାନ୍ତରେ ଉପନୀତ ହୋଇ କହିଥିଲେ ଯେ ଇଂରେଜ ରାଜତ୍ୱ ଆରମ୍ଭରେ ଯେଉଁ ଘୋର ଅତ୍ୟାଚାର ଓ ଦୌରାତ୍ମ୍ୟ ଚାଲିଲା, ସେଥିରେ ଏକ ସମୟର ଏକ ସମୃଦ୍ଧିଶାଳୀ ଅଞ୍ଚଳ ଜନମାନବହୀନ ଅଞ୍ଚଳରେ ପରିଣତ ହୋଇଗଲା ।

## (ଜ) ରାଜାଙ୍କ ବିରୋଧରେ କଠୋର କାର୍ଯ୍ୟାନୁଷ୍ଠାନ

୧୮୦୪ରେ ଇଂରେଜମାନେ ଖୋରଧା ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ପ୍ରଥମେ କଟକରେ ଓ ତା'ପରେ ମେଦିନୀପୁର ଜେଲରେ ବନ୍ଦୀ କରି ରଖିଥିଲେ । ତିନି ବର୍ଷ ଜେଲଦଣ୍ଡ ଭୋଗିଲା ପରେ ୧୮୦୭ ମାର୍ଚ୍ଚ ମାସରେ ସେ ମୁକ୍ତ ହେଲେ । ତାଙ୍କୁ କିନ୍ତୁ ଖୋରଧାକୁ ଫେରିବାପାଇଁ ଅନୁମତି ଦିଆଗଲା ନାହିଁ । ପୁରୀରେ ରହିବାପାଇଁ ଆଦେଶ ପାଇଲେ । ଖୋରଧାର ମାଲିକାନା ସ୍ୱତ୍ୱପାଇଁ ରାଜସ୍ୱର ଏକ-ଦଶମାଂଶ ମାସିକ ୨୧୩ ଟଙ୍କା ଭତ୍ତା ପାଇଲେ । ଏଥି ସହିତ ସେ ଜଗନ୍ନାଥ ମନ୍ଦିର ତତ୍ତ୍ୱାବଧାରକ ଭାବେ ନିଯୁକ୍ତ ହେଲେ ।

ରାଜା ଖୋରଧା ଇଷ୍ଟେଟକୁ ତାଙ୍କୁ ଫେରାଇ ଦେବାପାଇଁ ବ୍ରିଟିଶ ସରକାରଙ୍କୁ ଆବେଦନ କଲେ । ପୂର୍ବତନ ମରାଠା ସରକାରଙ୍କୁ ଯେଉଁ ପେସକସ ଦେଉଥିଲେ ତାହା ମଧ୍ୟ ରାଜା ଦେବାକୁ ରାଜି ଥିଲେ । ଖୋରଧାର ସଦର ଜମା ୩୦,୦୦୦ଟଙ୍କା ସ୍ଥିରୀକୃତ ହେଉ ବୋଲି ସେ ଚାହିଁଲେ । କିନ୍ତୁ ବ୍ରିଟିଶ ସରକାର୍ ଏହା କମ୍ ଥିବା ଦର୍ଶାଇ ରାଜାଙ୍କ ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଲେ । ରାଜାଙ୍କ ସ୍ୱଭାବ ଓ ଚରିତ୍ର ଉପରେ ଇଂରେଜ ସରକାରଙ୍କ ଆସ୍ଥା ନ ଥିଲା । ବନ୍ଦୋବସ୍ତ ଅଧ୍ୟକ୍ଷ ଉଭୟ ବୁଲର୍ ଓ ରିଚାର୍ଡ଼ସନ ମତ ଦେଲେ ଯେ ରାଜା ତାଙ୍କ ଜମିଦାରୀ ଆଦୌ ଚଳାଇ ପାରିବେ ନାହିଁ । ସଦର ଜମା କମ୍ କରାଗଲେ ମଧ୍ୟ ରାଜା ତାଙ୍କ ରାଜସ୍ୱ ପୈଠ କରିବାରେ ହେଳା କରିବେ । ସୁତରାଂ କନିକାର ରାଜାଙ୍କ ଜମିଦାରୀକୁ କମ୍ ଦରରେ ଦିଆଗଲେ ମଧ୍ୟ ଖୋରଧା ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଏହି ସୁବିଧା ଦିଆଗଲା ନାହିଁ ।

ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ମଧ୍ୟ ପ୍ରଥମେ ଜଗନ୍ନାଥ ମନ୍ଦିର ପରିଚାଳନା ଭାର ଦିଆଯାଇ ନ ଥିବାରୁ ସେ କ୍ଷୁବ୍ଧ ହେଲେ । ପରେ ଅବଶ୍ୟ ତାଙ୍କୁ ମନ୍ଦିରର

ତତ୍ତ୍ୱାବଧାରକଭାବେ ନିଯୁକ୍ତି ମିଳିଲା । କିନ୍ତୁ ତାଙ୍କର କ୍ଷମତା ବହୁଭାବେ ସଙ୍କୁଚିତ କରାଯାଇଥିଲା । ପରିଛା ନିଯୁକ୍ତ କରିବା ବା ବହିଷ୍କାର କରିବାକୁ କ୍ଷମତା ତାଙ୍କୁ ଦିଆଗଲା ନାହିଁ । ବ୍ରିଟିଶ ସରକାର ତିନି ଜଣ ପରିଛା ନିଯୁକ୍ତ କଲେ । ରାଜାଙ୍କର କ୍ଷମତା ବହିର୍ଭୂତ କାର୍ଯ୍ୟକଳାପ ସରକାରଙ୍କୁ ଜଣାଇବା ସେମାନଙ୍କର କର୍ତ୍ତବ୍ୟ ହେଲା । ଜଗନ୍ନାଥ ମନ୍ଦିର ସେବାରେ କିଛି ଅବହେଳା ଦେଖାଦେଲେ ରାଜା ଦଣ୍ଡ ଦେଇ ପାରିବେ କ୍ଷମତା ଅବଶ୍ୟ ଦିଆଗଲା । ମାତ୍ର ସେବାୟତଙ୍କ କିଛି ବେନିୟମ କାର୍ଯ୍ୟକଳାପ ବା ବିଶୃଙ୍ଖଳାପାଇଁ କେବଳ ୧ ମାସ ଦରମା ପର୍ଯ୍ୟନ୍ତ ଜୋରିମାନା କରିବାର ଅଧିକାର ତାଙ୍କ ହାତେ ରହିଲା । ଏପରିକି ରାଜା ବା ତାଙ୍କ ଉତ୍ତରାଧିକାରୀଙ୍କୁ ତତ୍ତ୍ୱାବଧାରକ ପଦରୁ ଉଚ୍ଛେଦ କରିପାରିବେ ବୋଲି ୧୮୧୦ର 'ରେଗୁଲେସନ ୧୯' ଅନୁଯାୟୀ ବ୍ୟବସ୍ଥା ହେଲା ।

ଏକ ସମୟରେ ଗଜପତି ରାଜାଙ୍କୁ ମନ୍ଦିରର ମୂଲ୍ୟବାନ୍ ପଦାର୍ଥ ଚୋରିପାଇଁ ସନ୍ଦେହ କରାଯାଇଥିଲା । ୧୮୧୨ ଖ୍ରୀଷ୍ଟାବ୍ଦରେ ବିଗ୍ରହମାନଙ୍କ ସାଜସଜ୍ଜା ଦାୟିତ୍ୱରେ ଥିବା ମହାଦେବ ମେକାପଙ୍କର ମୃତ୍ୟୁ ହେଲା । ପରେ ତାଙ୍କ ପୁତ୍ର ଧୁନ୍ଦି ମେକାପ ପିତାଙ୍କ କାର୍ଯ୍ୟରେ ନିଯୁକ୍ତ ହେଲେ । କିନ୍ତୁ ତାଙ୍କୁ କାର୍ଯ୍ୟରେ ସହାୟତା ଦିଆ ନ ଗଲେ ସେ କାର୍ଯ୍ୟ ଠିକ୍ ଭାବେ ତୁଲାଇ ପାରିବେ ନାହିଁ ବୋଲି ରାଜାଙ୍କୁ ଜଣାଇଲେ । ରାଜା ତେଣୁ ତିନି ଜଣ କର୍ମଚାରୀ ନିଯୁକ୍ତ କଲେ । ରାଜା ଆବଶ୍ୟକୀୟ ଜିନିଷ ଜଗନ୍ନାଥଙ୍କ ଭଣ୍ଡାରଘରୁ ନେଲେ ଏବଂ ଧୁନ୍ଦି ମେକାପଙ୍କୁ ଭଣ୍ଡାରଘର ଚାବି ଫେରାଇଲେ । ତା'ର ପରବର୍ଷ ଅର୍ଥାତ୍ ୧୮୧୩ ମସିହାରେ ଭଣ୍ଡାରଘର ଖୋଲାଯାଇ ଯାଞ୍ଚ କରାଗଲା । କେତେକ ମୂଲ୍ୟବାନ୍ ପଦାର୍ଥ ମିଳୁ ନ ଥିବା ଜଣାଗଲା । ଯାତ୍ରୀ କର କଲେକ୍ଟର ଏ ବିଷୟରେ ଅନୁସନ୍ଧାନ କଲେ ଏବଂ ରାଜାଙ୍କୁ ଏଥିପାଇଁ ଦାୟୀ କଲେ । ସେ କିନ୍ତୁ ନିର୍ଦ୍ଦୋଷ ବୋଲି ରାଜା ଜଣାଇଲେ । କଲିକତା ହାଇକୋର୍ଟର ଜଜ୍ ୱାଟସନ୍ ଯାତ୍ରୀକର କଲେକ୍ଟରଙ୍କ ଦୋଷାରୋପକୁ ଅନୁମୋଦନ କଲେ ନାହିଁ । ଏ ବିଷୟରେ ଆପତ୍ତି ହୋଇଥିଲେ ମାଜିଷ୍ଟ୍ରେଟ୍ ବିଧିବଦ୍ଧ ଭାବେ ନିଯୁକ୍ତ ହୋଇ ବିଚାର କରିଥାନ୍ତେ ବୋଲି ସେ ମତ ଦେଲେ । ଯାତ୍ରୀ କର କଲେକ୍ଟର ଏ ବିଷୟରେ ଅନୁସନ୍ଧାନ କରିବା ବା ଦଣ୍ଡ ଦେବା ତାଙ୍କ କ୍ଷମତା ବାହାରେ ବୋଲି ସେ ଦର୍ଶାଇଲେ । ସରକାରଙ୍କ ଦୃଷ୍ଟିକୁ ଏହା ମଧ୍ୟ ଅଣାଗଲା । ୧୮୦୯ ମସିହା ବ୍ୟବସ୍ଥା ଅନୁଯାୟୀ ମନ୍ଦିର ତତ୍ତ୍ୱାବଧାରକ ଭାବେ ତାହା ରାଜାଙ୍କ କ୍ଷମତା ପରିସରଭୁକ୍ତ ବୋଲି ସରକାର ମତ ଦେଲେ ।

ରିଚାର୍ଡସନ୍ କମିସନର ଥିଲାବେଳେ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ମନ୍ଦିର ତତ୍ତ୍ୱାବଧାରକ ପଦରୁ ବହିଷ୍କାର କରିବାକୁ ପ୍ରସ୍ତାବ ଦେଇଥିଲେ । ରାଜାଙ୍କ ଔଦ୍ଧତ୍ୟପୂର୍ଣ୍ଣ

ବ୍ୟବହାର ଯୋଗୁଁ ଉଚ୍ଚ ବା ଅଭିଜାତ ଶ୍ରେଣୀ ଯାତ୍ରୀଙ୍କ ସଂଖ୍ୟା କମିଯିବାର କାରଣ ସେ ଦର୍ଶାଇଥିଲେ । ଦ୍ୱିତୀୟରେ ରାଜାଙ୍କର ପୁନଃ ରାଜ୍ୟପ୍ରାପ୍ତି ଆକାଙ୍କ୍ଷା ଥିବା ତାଙ୍କର ହୃଦ୍‌ବୋଧ ହୋଇଥିଲା । ଦିନେ ନା ଦିନେ ଜଗନ୍ନାଥଙ୍କ ଆଶୀର୍ବାଦରୁ ପୁଣି ଶାସନ କ୍ଷମତାକୁ ଆସିବେ ବୋଲି ରାଜାଙ୍କ ଦମ୍ଭୋକ୍ତି ସେ ଉପରିସ୍ଥ କର୍ତ୍ତୃପକ୍ଷକୁ ଜଣାଇ ଦେଇଥିଲେ । କିନ୍ତୁ ସରକାର ରିଚାର୍ଡସନ୍‌ଙ୍କ ପ୍ରସ୍ତାବକୁ ଗ୍ରହଣ କରି ନ ଥିଲେ ହେଁ ଶ୍ରୀମନ୍ଦିରର ଦାୟିତ୍ୱ ଉତ୍ତମରୂପେ ତୁଲାଇବାକୁ ରାଜାଙ୍କୁ ପରାମର୍ଶ ଦେଇଥିଲେ ।

**ଜଜ୍‌ଙ୍କ ସମାଲୋଚନା** – କଲିକତା ସର୍କିଟ କୋର୍ଟର ବିଚାରପତି ୱାଟସନ୍ ୧୮୧୭ ବିଦ୍ରୋହର ଅବ୍ୟବହିତ ପୂର୍ବରୁ୧୮୧୭ ଜାନୁୟାରୀ ୪ ତାରିଖରେ ସମୁଦ୍ରପଥରେ ଆସି ଫେବୃୟାରୀ ୮ ତାରିଖଯାଏଁ ପୁରୀରେ ଅବସ୍ଥାନ କରିଥିଲେ । ସେହି ସମୟରେ ରାଜା ଦ୍ୱିତୀୟ ମୁକୁନ୍ଦଦେବ ତାଙ୍କୁ ଦୁଇ ଥର ସାକ୍ଷାତ୍ କରିଥିଲେ । ୧୮୦୮ ମସିହାରେ ତାଙ୍କୁ ଫେରାଇ ଦିଆଯାଇଥିବା ଲେମ୍ବାଇ ମାହାଲର ଅତ୍ୟଧିକ ରାଜସ୍ୱ ଜମାବୃଦ୍ଧି ବିଷୟ ସେ ତାଙ୍କୁ ଅବଗତ କରାଇଥିଲେ । ତାଙ୍କର ଆର୍ଥିକ ଅକ୍ଷମତା ସତ୍ତ୍ୱେ ତାଙ୍କ ଉପରେ ବହୁ ପରିମାଣରେ ବକେୟା ଜମା ଧାର୍ଯ୍ୟ କରାଯାଇ ସେହି ବକେୟା ଜମା ଆଦାୟପାଇଁ କଲେକ୍ଟରଙ୍କ ତନାଘନା ଜୁଲୁମ ସମ୍ପର୍କରେ ତାଙ୍କର ଦୃଷ୍ଟି ଆକର୍ଷଣ କରି ଖଣ୍ଡିଏ ଦରଖାସ୍ତ ତାଙ୍କୁ ହାତେ ହାତେ ଦେଇଥିଲେ । ବିଚାରପତି ୱାଟସନ୍ ଅପ୍ରେଲ ମାସ ଶେଷ ପର୍ଯ୍ୟନ୍ତ ସେହି ଦରଖାସ୍ତ ସମ୍ପର୍କରେ କୌଣସି ପଦକ୍ଷେପ ନେଇ ନ ଥିଲେ । କିନ୍ତୁ ବିଦ୍ରୋହର ପରେ ପରେ ଅର୍ଥାତ୍ ୧୮୧୭ ମେ ମାସ ୩ ତାରିଖରେ ରାଜା ମୁକୁନ୍ଦଦେବଙ୍କ ଦରଖାସ୍ତର ଇଂରାଜୀ ନକଲ ସହିତ ଏକ ଦୀର୍ଘ ରିପୋର୍ଟ ବିଚାରବିଭାଗ ସଚିବଙ୍କୁ ଦେଇଥିଲେ । ସେ ସେହି ରିପୋର୍ଟରେ ପୁରୀ ରାଜାଙ୍କ ଉପରେ ଅତ୍ୟଧିକ ବକେୟା ଜମା ଧାର୍ଯ୍ୟ କରାଯିବା ଏବଂ ତାକୁ ଆଦାୟ କରିବାପାଇଁ କଲେକ୍ଟରଙ୍କ ଜୁଲୁମକୁ ସମାଲୋଚନା କରିଥିଲେ । ପୁଣି ଲେମ୍ବାଇ ପ୍ରଗଣା ଜମିଦାରୀ ମାହାଲପାଇଁ ରିହାତି ଦେଇ ସାମାନ୍ୟ ପରିମାଣରେ ଜମାଧାର୍ଯ୍ୟ କରାଯିବା ଉଚିତ ହୋଇଥାଆନ୍ତା ବୋଲି ମତ ବ୍ୟକ୍ତ କରିଥିଲେ ।

ରାଜାଙ୍କର ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାରେ ଏଭଳି ଚାପ ପ୍ରୟୋଗ ୧୮୧୭ ବିଦ୍ରୋହର ଏକ କାରଣ ହୋଇପାରେ ବୋଲି ଜଜ୍ ୱାଟସନ୍ ମତ ଦେଇଥିଲେ ।

ପଞ୍ଚମ ପରିଚ୍ଛେଦ

# ଜଗବନ୍ଧୁଙ୍କ ଦୁରବସ୍ଥା

ଇଂରେଜମାନେ ଓଡ଼ିଶା ଅଧିକାର କରିବାପରେ ଅର୍ଥାତ୍ ୧୮୦୩ ଖ୍ରୀଷ୍ଟାବ୍ଦ ଶେଷଆଡ଼କୁ ଓଡ଼ିଆ ଜମିଦାରମାନଙ୍କୁ ସେମାନଙ୍କ ଜମିଦାରୀ ରେଜିଷ୍ଟ୍ରୀଭୁକ୍ତ କରିବାପାଇଁ ଆହ୍ୱାନ କଲେ । ଜଗବନ୍ଧୁ ପୈତୃକ କିଲା ରୋଡ଼ଙ୍ଗର ଅଧିକାରପାଇଁ ତତ୍ପର ହେଲେ । ସେ ପୂର୍ବ ଦିଲ୍ଲୀ ଦରବାରଙ୍କ ଏକ ପରୱାନା ପେଶ୍ କରି ଦରଖାସ୍ତ ଦେଇଥିଲେ । ସେଥିରେ ତାଙ୍କ ପୂର୍ବପୁରୁଷମାନେ ଭୋଗ କରି ଆସୁଥିବା ଖୋରଧା ଓ ଚାରି ଗୋଟି ପ୍ରଗଣା, ଯଥା – 'ଲେମ୍ବାଇ, ରାହାଙ୍ଗ, ସିରାଇ ଓ ଚବିଶକୁଦ'ରେ ନିଷ୍କର ଜମିଗୁଡ଼ିକର ବିବରଣୀ ଦେଇଥିଲେ । ସେତେବେଳେ ମେଜର ଫ୍ଲେଚର ଶାସନ ଦାୟିତ୍ୱରେ ଥିଲେ । ସେ ବକ୍‌ସି ଜଗବନ୍ଧୁଙ୍କ ଦାବିକୁ ଏକାବେଳେକେ ଅଗ୍ରାହ୍ୟ କରିଦେଲେ ଓ ସମସ୍ତ ଜାଗିରି ଜମିକୁ ଖାସ୍ କରିଦେଲେ । ବଖରାଏ କି ବିଘାଏ ସୁଦ୍ଧା ଜମି ଛାଡ଼ିଲେ ନାହିଁ ।

୧୮୦୪-୦୫ ଖ୍ରୀଷ୍ଟାବ୍ଦରେ ଚାର୍ଲସ ଗ୍ରୋଏମଙ୍କ ନୂତନ ବନ୍ଦୋବସ୍ତରେ ଜଗବନ୍ଧୁ ଗଡ଼ରୋଡ଼ଙ୍ଗର ଦଖଲଦାର ହେଲେ । ବନ୍ଦୋବସ୍ତ ରେକର୍ଡରେ ଜଗବନ୍ଧୁଙ୍କ ନାମରେ ଉକ୍ତ ଗଡ଼ରୋଡ଼ଙ୍ଗ କିଲା ରେଜିଷ୍ଟ୍ରୀଭୁକ୍ତ ହେଲା ।

୧୮୦୫ ସେପ୍ଟେମ୍ବରଠାରୁ ୧୮୦୮ ସେପ୍ଟେମ୍ବରରେ ଜର୍ଜ ୱେବ୍‌ଙ୍କ ତିନିବର୍ଷିଆ ବନ୍ଦୋବସ୍ତ ହେଲା । ସେ ବନ୍ଦୋବସ୍ତରେ ଜଗବନ୍ଧୁଙ୍କୁ ମଧ୍ୟ ଗଡ଼ରୋଡ଼ଙ୍ଗର ଦଖଲଦାରରୂପେ ପଟ୍ଟା ଦିଆଗଲା ।

ଚାର୍ଲସ ଗ୍ରୋଏମ କଲେକ୍ଟର ଥିଲାବେଳେ ତାଙ୍କ ଅଫିସର ଦେୱାନ ଥିଲେ ବଙ୍ଗଦେଶର ପାଇକପଡ଼ାର ଜଣେ କାୟସ୍ଥ କୃଷ୍ଣଚନ୍ଦ୍ର ସିଂହ ।

ସେତେବେଳେ ଇଂରେଜ ଶାସନ ରାଜ୍ୟରେ ପ୍ରତିଷ୍ଠିତ ହୋଇଥାଏ । ଶାସନରେ ଅଭିଜ୍ଞତା ଥିଲା ଭଳି ଲୋକ ଓଡ଼ିଶାରେ ପ୍ରାୟ ନ ଥିଲେ । ଓଡ଼ିଶା ବଙ୍ଗ ଲାଟଙ୍କ ଅଧୀନରେ ଥିଲା । ବଙ୍ଗଳା ବହୁ ଆଗରୁ ଇଂରେଜମାନେ ଅଧିକାର କରିସାରିଥିଲେ । ସ୍କୁଲ-କଲେଜମାନ ସ୍ଥାପିତ ହୋଇଥିବାରୁ ବଙ୍ଗପ୍ରଦେଶର ବହୁ ଲୋକ ଇଂରାଜୀ ଶିକ୍ଷା ଲାଭ କରିଥିଲେ । ସେମାନେ ଇଂରାଜୀ ହାକିମମାନଙ୍କ ସୁପାରିସକ୍ରମେ ଓଡ଼ିଶାକୁ ଆସି ଶାସନକଳରେ ମୁଖ୍ୟ ସ୍ଥାନମାନ ଅଧିକାର କଲେ । କେବଳ ଚପରାସୀ ଓ ଅତି ନିମ୍ନ ଶ୍ରେଣୀର ଚାକିରି ସ୍ଥାନୀୟ ଲୋକେ ପାଇଲେ । ଲୋକଙ୍କୁ ଶାସନ ପରିଚାଳନା କ୍ଷେତ୍ରରେ ତାଲିମ ଦିଆଯିବାର କୌଣସି ବ୍ୟବସ୍ଥା ହୋଇ ନ ଥିଲା । ଅଣଓଡ଼ିଆ

କର୍ମଚାରୀମାନେ ନିଜ ସ୍ୱାର୍ଥ ସିଦ୍ଧିପାଇଁ ତାହା ମଧ୍ୟ କରାଇ ଦେଉ ନ ଥିଲେ । ନିଜ ନିଜ ପରିବାର ବା ନିକଟ ସମ୍ପର୍କୀୟ ବ୍ୟକ୍ତିଙ୍କୁ ବଡ଼ ବଡ଼ ଚାକିରିରେ ନିଯୁକ୍ତ କରାଇ ଓଡ଼ିଆ ଜମିଦାର ତଥା ପ୍ରଜାମାନଙ୍କୁ ଶୋଷଣ କରିବାରେ ଲାଗିପଡ଼ିଲେ ।

**ରୋଡ଼ଙ୍ଗ ଉପରେ କୃଷ୍ଣଚନ୍ଦ୍ରଙ୍କ ଲୋଲୁପ ଦୃଷ୍ଟି –** ଇଂରେଜ ପ୍ରଶାସକମାନେ ଓଡ଼ିଆଭାଷା ଜାଣି ନ ଥିଲେ । ଏହାର ପୂର୍ଣ୍ଣ ସୁଯୋଗ ନେଲେ ସିରସ୍ତାଦାର କୃଷ୍ଣଚନ୍ଦ୍ର ସିଂହ । ସେ କଲେକ୍ଟରଙ୍କୁ ଯାହା କହିଲେ ତାହା ଗ୍ରହଣ କରାଗଲା । ଫଳରେ କୃଷ୍ଣଚନ୍ଦ୍ର କଲେକ୍ଟରଙ୍କ ଅଫିସରେ ସର୍ବେସର୍ବା ହେଲେ ।

୧୮୦୪ ଖ୍ରୀଷ୍ଟାବ୍ଦରେ ଖୋରଧା ରାଜା ଓ ଇଂରେଜମାନଙ୍କ ମଧ୍ୟରେ ୪ ଗୋଟି ପ୍ରଗଣାପାଇଁ ଯୁଦ୍ଧ ହେଲା । ଇଂରେଜମାନେ ବିଜୟୀ ହେଲେ । ରାଜା ମଧ୍ୟ ରାଜ୍ୟ ହରାଇଲେ । ଖୋରଧାରେ ରାଜପଦ ଲୋପ ହେବା ପରେ ରାଜ୍ୟର ଯେଉଁ ଚାରି ଗୋଟି ପ୍ରଗଣାପାଇଁ ଖୋରଧାରାଜା ଓ ଇଂରେଜମାନଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା, ସେହି ପ୍ରଗଣାଗୁଡ଼ିକ କଲେକ୍ଟରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଲା । ଫଳରେ କୃଷ୍ଣଚନ୍ଦ୍ର ସିଂହ ହିଁ ସେ ଚାରି ଗୋଟି ପ୍ରଗଣାର ମାଲିକ ହୋଇଗଲେ । ସେହି ଚାରି ଗୋଟି ପ୍ରଗଣାର ଖଜଣା ଆଦାୟପାଇଁ ନିଜ ଭାଇ ଗୌରହରି ସିଂହଙ୍କୁ ତହସିଲଦାରଭାବେ ନିଯୁକ୍ତ କଲେ । ଏହାପରେ ରୋଡ଼ଙ୍ଗ ମାହାଲ ଉପରେ ତାଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା । କିପରି ତାହାକୁ ହସ୍ତଗତ କରିବେ, ସେଥିପାଇଁ ସେ ଯୋଜନା ପ୍ରସ୍ତୁତ କରିବାରେ ଲାଗିଲେ । ସେ ପକ୍କା ଚକ୍ରୀ ଭଳି ମୂଳରୁ କାର୍ଯ୍ୟ ଆରମ୍ଭ କରିଦେଲେ ।

୧୮୦୫ ଖ୍ରୀଷ୍ଟାବ୍ଦରେ ଗ୍ରୋଏମ୍‌ଙ୍କ ସ୍ଥାନରେ ୱେବ୍ କଲେକ୍ଟର ହେଲେ । କୃଷ୍ଣଚନ୍ଦ୍ର ସିଂହ ନିଜର ଆଉ ଜଣେ ଭାଇ ଚନ୍ଦ୍ରପ୍ରସାଦ ସିଂହଙ୍କୁ କଲେକ୍ଟର ଅଫିସରେ ସିରସ୍ତାଦାର ଭାବେ ରଖି ନିଜେ ଚାକିରି ଛାଡ଼ିଦେଲେ । କିନ୍ତୁ କଟକରେ ବସବାସ କରିବାକୁ ଲାଗିଲେ । ୧୮୦୫ ବନ୍ଦୋବସ୍ତ ମତେ ରୋଡ଼ଙ୍ଗ ମାହାଲର ଜମିଦାର ଭାବରେ ବକ୍ସି ସିଧାସଳଖ କଲେକ୍ଟରଙ୍କ ଅଫିସରେ ରାଜସ୍ୱ ଜମା ଦାଖଲ କରିବାର କଥା । କିନ୍ତୁ ଚନ୍ଦ୍ରପ୍ରସାଦ ସିଂହ ବକ୍ସିଙ୍କୁ ରୋଡ଼ଙ୍ଗର ରାଜସ୍ୱ କଟକରେ ଜମା ନ ଦେଇ ପୁରୀରେ ଥିବା ତହସିଲଦାର ଗୌରହରି ସିଂହଙ୍କୁ ଦେବାପାଇଁ ପରାମର୍ଶ ଦେଲେ । ବକ୍ସି ଜଗବନ୍ଧୁ ଚନ୍ଦ୍ରପ୍ରସାଦ ସିଂହଙ୍କ ଚାଲ ବୁଝିପାରି ନ ଥିଲେ । ତାଙ୍କ ପରାମର୍ଶମତେ ସେ ରୋଡ଼ଙ୍ଗର ରାଜସ୍ୱ ୨୩୦୦ଟଙ୍କା ପୁରୀର ତହସିଲଦାର ଗୌରହରି ସିଂହଙ୍କୁ ଦେଇଦେଲେ । କୃଷ୍ଣଚନ୍ଦ୍ରଙ୍କ ପରାମର୍ଶରେ ରୋଡ଼ଙ୍ଗ ଓ ଅନ୍ୟାନ୍ୟ ଖାସମାହାଲ ଅଞ୍ଚଳକୁ 'ରାହାଙ୍ଗ ଓଗେର' ବୋଲି ଗୌରହରି ଖାତାରେ ଲେଖି ଯେ ଯାହା ଖଜଣା ଦେଲା ତାହା 'ରାହାଙ୍ଗ ଓଗେର' ତଳେ ଅସୁଲ ଦେଉଥିଲେ । ବକ୍ସି ଜଗବନ୍ଧୁ ରୋଡ଼ଙ୍ଗପାଇଁ ଦେଉଥିବା ଖଜଣା ସ୍ୱତନ୍ତ୍ରଭାବରେ ରୋଡ଼ଙ୍ଗପାଇଁ ଅସୁଲ ନ ଲେଖି 'ରାହାଙ୍ଗ ଓଗେର'ରେ ଅସୁଲ ଦେଲେ ।

୧୮୦୭ ଖ୍ରୀଷ୍ଟାବ୍ଦରେ 'ରାହାଙ୍ଗ ଓଗେର' ମାହାଲକୁ ବର୍ଷିକିଆ ନିଲାମ ଭିତ୍ତିରେ ପଟ୍ଟା ଦେବାକୁ କଲେକ୍ଟର ବିଜ୍ଞପ୍ତି ପ୍ରକାଶ କଲେ । କୃଷ୍ଣଚନ୍ଦ୍ରଙ୍କର ଆଉ ଜଣେ ସମ୍ପର୍କୀୟ ଲକ୍ଷ୍ମୀନାରାୟଣ ରାୟ ନିଲାମ ଧରି ୧୮୦୭-୦୮ ବର୍ଷପାଇଁ ପଟ୍ଟା ନେଲେ । ବକ୍‌ସିଙ୍କୁ ସେ ବର୍ଷ ରାଜସ୍ୱ ଲକ୍ଷ୍ମୀନାରାୟଣଙ୍କୁ ଦେବାପାଇଁ କୁହାଗଲା ଓ ସେ ତାହା କଲେ । ତା'ର ପର ବର୍ଷ ଅର୍ଥାତ୍ ୧୮୦୮-୦୯ ପାଇଁ ସୁମନ୍ତ ପାଟଯୋଶୀ ନାମକ ଆଉ ଜଣେ ବ୍ୟକ୍ତି 'ରାହାଙ୍ଗ ଓଗେର'ର ନିଲାମ ଧରି ପଟ୍ଟା ନେଲେ । ସେ ବର୍ଷର ରାଜସ୍ୱ ମଧ୍ୟ ବକ୍‌ସି ଜଗବନ୍ଧୁ ସୁମନ୍ତ ପାଟଯୋଶୀଙ୍କୁ ଦେଲେ । ୧୮୦୯-୧୦ରେ 'ନବଗଠିତ 'ରାହାଙ୍ଗ ଓଗେର' ପ୍ରଗଣାକୁ ସ୍ଥାୟୀ ଭାବେ ନିଲାମ କରି ବିକ୍ରି କରିଦେବାକୁ ସରକାର ବିଜ୍ଞପ୍ତି ପ୍ରକାଶ କଲେ । ଏଥିରେ ପ୍ରଗଣାଗୁଡ଼ିକର ଗ୍ରାମ ଓ ମାହାଲ ସ୍ୱତନ୍ତ୍ର ଭାବେ ଘୋଷଣା କରାଯାଇ ନ ଥିଲା । କୌଶଳ ଓ ଉଦ୍ଦେଶ୍ୟପୂର୍ଣ୍ଣ 'ଓଗେର' ଶବ୍ଦ ପ୍ରୟୋଗ କରାଯାଇ ଉପରୋକ୍ତ ତିନି ପ୍ରଗଣା ସହିତ ରୋଡ଼ଙ୍ଗକୁ ମିଶାଯାଇ 'ରାହାଙ୍ଗ ଓଗେର' ଉଲ୍ଲେଖ କରାଗଲା । ଏଥର ସ୍ୱୟଂ କୃଷ୍ଣଚନ୍ଦ୍ର ସିଂହ ନିଲାମ ଧରି 'ରାହାଙ୍ଗ ଓଗେର' ପ୍ରଗଣାକୁ କିଣିନେଇ ଗୋଟିଏ ବଡ଼ ମାହାଲର ରାତାରାତି ଜମିଦାର ହୋଇଗଲେ । ତାଙ୍କ ନାମ ଅନୁସାରେ ସେହି ଜମିଦାରୀକୁ 'ଲାଲାବାବୁ ଇଷ୍ଟେଟ' ଏବଂ ତାଙ୍କ ଜନ୍ମସ୍ଥାନ ନାମ ଅନୁଯାୟୀ 'ପାଇକପଡ଼ା ଇଷ୍ଟେଟ' କୁହାଗଲା ।

ଏହାପରେ ଲାଲା କୃଷ୍ଣଚନ୍ଦ୍ର ସିଂହ ରୋଡ଼ଙ୍ଗ ମାହାଲ ଦଖଲ କରିବାପାଇଁ ଲୋକ ପଠାଇଲେ । ବକ୍‌ସି ଜଗବନ୍ଧୁ ସେତେବେଳେ କୃଷ୍ଣଚନ୍ଦ୍ରଙ୍କ ଚକ୍ରାନ୍ତ ବୁଝିପାରିଲେ । ତାଙ୍କ ଲୋକେ ମଧ୍ୟ ଏଥିରେ ପ୍ରବଳ ବାଧା ଦେଲେ । ସିଂହଙ୍କ ଲୋକ ଓ ବକ୍‌ସିଙ୍କ ଲୋକଙ୍କ ମଧ୍ୟରେ ମାରପିଟ ହେଲା । ଫଳରେ ସିଂହ ରୋଡ଼ଙ୍ଗକୁ ଦଖଲ କରିପାରିଲେ ନାହିଁ ।

କୃଷ୍ଣଚନ୍ଦ୍ର ସିଂହ ଦଖଲ ପାଇବାରେ ଅସମର୍ଥ ହୋଇ କିଛି ସମୟପାଇଁ ଜଗବନ୍ଧୁଙ୍କୁ ମାଲିକାନା ହିସାବରେ କିଛି ଟଙ୍କା ଦେଇ ନିରବ ରହିବାକୁ ଷଡ଼୍ୟନ୍ତ୍ର କଲେ ।

କୃଷ୍ଣଚନ୍ଦ୍ର ଏହାପରେ କଚେରିରେ ଚାକିରି କରୁଥିବା ଦୀପଚାନ୍ଦ ରାୟ ନାମକ ଜଣେ ବ୍ୟକ୍ତିଙ୍କୁ ଅସ୍ତ୍ରଭାବେ ବ୍ୟବହାର କଲେ । ଦୀପଚାନ୍ଦ କୃଷ୍ଣଚନ୍ଦ୍ରଙ୍କ ବିରୋଧୀ ଭାବେ ଅଭିନୟ କଲେ । ସେ ବକ୍‌ସିଙ୍କ ପ୍ରତି ସହାନୁଭୂତି ପ୍ରକାଶ କରି ବକ୍‌ସିଙ୍କଠାରୁ ଏକ ବର୍ଷପାଇଁ ରୋଡ଼ଙ୍ଗ ମାହାଲର ପଟ୍ଟା ନେବାକୁ କ୍ଷମ ହେଲେ । ଦୀପଚାନ୍ଦ ଅଣଓଡ଼ିଆ ଥିଲେ । ସେ ବକ୍‌ସିଙ୍କଠାରୁ ନେଇଥିବା ପଟ୍ଟାକୁ ଚିରିଦେଇ କୃଷ୍ଣଚନ୍ଦ୍ର ସିଂହଙ୍କଠାରୁ ଆଉ ଏକ ପଟ୍ଟା ଲେଖାଇନେଲେ ।

୧୮୧୩ ମସିହାରେ କୃଷ୍ଣଚନ୍ଦ୍ର ସିଂହ ତାଙ୍କ ଦାବି ଆଇନସମ୍ମତ ହେବା ଜାଣି ରୋଡ଼ଙ୍ଗର ପ୍ରକୃତ ମାଲିକ ହିସାବରେ ବ୍ରିଟିଶ ସରକାରଙ୍କ ସଙ୍ଗେ ଚୁକ୍ତିପତ୍ର ସମ୍ପନ୍ନ କରିବାକୁ ଆଗେଇ ଆସିଲେ । ଏହାକୁ ବିରୋଧ କରି ଜଗବନ୍ଧୁ ସରକାରଙ୍କଠାରେ

ଆପତ୍ତି ଦରଖାସ୍ତ ଦେଲେ । ପୂର୍ବର ଘଟଣାଟି କଟକ କମିସନର ସି. ବୁଲଉ ସାହେବଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେ କଲେକ୍ଟର ଆର୍. ମିଲଫୋର୍ଡଙ୍କୁ ଏ ସମ୍ପର୍କରେ ଏକ ରିପୋର୍ଟ ଦାଖଲ କରିବାକୁ ନିର୍ଦ୍ଦେଶ ଦେଲେ । କଲେକ୍ଟର କିନ୍ତୁ ସେହି ଷଡ଼୍ଯନ୍ତ୍ରକାରୀ ଅଣଓଡ଼ିଆ କର୍ମଚାରୀମାନଙ୍କ ଉପରେ ନିର୍ଭର କଲେ । ତେଣୁ ପ୍ରକୃତ ଘଟଣା ପ୍ରକାଶ ପାଇପାରି ନ ଥିଲା । ଚକ୍ରାନ୍ତ କରି ରୋଡ଼ଙ୍ଗ ଜମିଦାରୀରୁ ତାଙ୍କୁ ଉଚ୍ଛେଦ କରାଯାଇଥିବା ଜଣାଇ ଜଗବନ୍ଧୁ ଏହାର ଅନୁସନ୍ଧାନ କରି ନ୍ୟାୟ ପ୍ରଦାନ କରିବାକୁ କଟକ କମିସନରଙ୍କୁ ଦରଖାସ୍ତ ଦେଲେ । ଏହା କମିସନର ରିଚାର୍ଡସନ୍‌ଙ୍କ ବିଚାରପାଇଁ ଉପସ୍ଥାପିତ କରାଗଲା । ସେ ଜଗବନ୍ଧୁଙ୍କ ଦରଖାସ୍ତ ତଦନ୍ତ କଲେ ଓ ରୋଡ଼ଙ୍ଗକୁ ରାହାଙ୍ଗ ସହିତ ମିଶାଇବା କେବଳ ପ୍ରବଞ୍ଚନାପୂର୍ଣ୍ଣ ନୁହେଁ, ପ୍ରତାରଣା ବୋଲି ମତ ଦେଲେ । ସେ ତାଙ୍କ ରାୟରେ ରୋଡ଼ଙ୍ଗକୁ ରାହାଙ୍ଗରୁ ଅଲଗା ରଖିବାପାଇଁ ନିର୍ଦ୍ଦେଶ ଦେଲେ ।

ଏଥି ମଧ୍ୟରେ ଜଗବନ୍ଧୁ ଓ ତାଙ୍କ ଭାଇଙ୍କ ପୁଅ ଗୋପୀନାଥଙ୍କ ମଧ୍ୟରେ ଜାଗିରି ବଣ୍ଟା ନେଇ ଏକ ମକଦ୍ଦମା ହୋଇଥିଲା । କିଏ କେତେ ପରିମାଣରେ ଜାଗିରିର ଭାଗ ପାଇବେ ସେ ସମ୍ପର୍କରେ ଏହି ବିବାଦ ପୂର୍ବରୁ ଲାଗି ରହିଥିଲା । କିନ୍ତୁ ଉଭୟଙ୍କ ଭିତରେ ଏକ ମିଳାମିଶା ହେଲା । ସମ୍ପତ୍ତିକୁ ଦଶ ଅଣା ଛଅ ଅଣା ହିସାବରେ ବଣ୍ଟା ହେବା ସ୍ଥିର ହେଲା ।

ସରକାରଙ୍କ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବା ପୂର୍ବରୁ ବକ୍‌ସି ଜଗବନ୍ଧୁଙ୍କର ରୋଡ଼ଙ୍ଗ ଜମିଦାରୀରେ କୌଣସି ଦାବି ନାହିଁ ବୋଲି କୃଷ୍ଣଚନ୍ଦ୍ର ସିଂହଙ୍କ ପକ୍ଷରୁ ଆପତ୍ତି ହେଲା । କିଲା ରୋଡ଼ଙ୍ଗ ଉପରେ ବକ୍‌ସିଙ୍କ ବଂଶ ଯେଉଁ ଦାବି କରୁଛନ୍ତି ତାହା ଉପଯୁକ୍ତ ପ୍ରମାଣଦ୍ୱାରା ସମର୍ଥିତ ନୁହେଁ ବୋଲି କୃଷ୍ଣଚନ୍ଦ୍ର ଦର୍ଶାଇଲେ । ଏହି ଆପତ୍ତି ସମ୍ପର୍କରେ ସରକାର ନିଷ୍ପତ୍ତି କଲେ ଯେ ଜଗବନ୍ଧୁ ପ୍ରଥମେ ଅଦାଲତରେ ତାଙ୍କ ଦାବି ସାବ୍ୟସ୍ତ କରନ୍ତୁ । କହିବା ବାହୁଲ୍ୟ ଯେ କୃଷ୍ଣଚନ୍ଦ୍ର ସିଂହ ନିଜ ପ୍ରଭାବ ବଳରେ କୋର୍ଟରୁ ଏପରି ଆଦେଶ କରାଇ ନେବାକୁ ସମର୍ଥ ହୋଇଥିଲେ । ଯେପର୍ଯ୍ୟନ୍ତ କୋର୍ଟରେ ଦାବି ପ୍ରମାଣ ନ ହୋଇଛି, ସେପର୍ଯ୍ୟନ୍ତ ରୋଡ଼ଙ୍ଗ କିଲା କୃଷ୍ଣଚନ୍ଦ୍ରଙ୍କ ଦଖଲରେ ରହିବ ବୋଲି ମଧ୍ୟ ଆଦେଶ ହୋଇଥିଲା ।

**ଜଗବନ୍ଧୁଙ୍କ ଚାଷଜମି ହଡ଼ପ** — କୃଷ୍ଣଚନ୍ଦ୍ରଙ୍କ ଚକ୍ରାନ୍ତ ଯୋଗୁଁ ଜଗବନ୍ଧୁ କେବଳ ଗଡ଼ରୋଡ଼ଙ୍ଗ ଜମିଦାରୀ ହରାଇ ନ ଥିଲେ । ତାଙ୍କର କିଛି ଚାଷଜମି ଚଣ୍ଡୀପୁଟ, ହରଚଣ୍ଡୀପୁର ପ୍ରଭୃତି ଗ୍ରାମରେ ଥିଲା । ସେସବୁର ବୁଝାସୁଝା କରୁଥିଲେ ତାଙ୍କ ଗୁମାସ୍ତା ଜଗବନ୍ଧୁ ପଟ୍ଟନାୟକ । ଜଗବନ୍ଧୁଙ୍କ ଦୁରବସ୍ଥାର ସୁଯୋଗ ନେଇ ସେ ଗ୍ରାମର ଚାଷଜମିକୁ କୃଷ୍ଣଚନ୍ଦ୍ର ସିଂହଙ୍କଠାରୁ ନିଜ ନାମରେ କବଲା କରିନେଲେ । ଏହା ଯେ ଗୁମାସ୍ତା ଜଗବନ୍ଧୁ ପଟ୍ଟନାୟକଙ୍କର ଚରମ ବିଶ୍ୱାସଘାତକତା ଥିଲା, ଏଥିରେ ସନ୍ଦେହ ନାହିଁ ।

ଜଗବନ୍ଧୁଙ୍କୁ ପ୍ରଥମେ ଲେମ୍ବାଇ, ରାହାଙ୍ଗ, ସିରାଇ ଓ ଚବିଶକୁଦର ଜମିଦାର କରାଗଲା ନାହିଁ । ପୁଣି କିଲା ରୋଡ଼ଙ୍ଗ ଜାଲିଯାତି କରି ତାଙ୍କଠାରୁ ଛଡ଼ାଇ ନିଆଗଲା । ଶେଷକୁ ଥିଲା ଶେଷ ସମ୍ବଳ କିଛି ନିଜ ଚାଷ ଜମି । ତାହାକୁ ହରାଇ ବକ୍ସି ଜଗବନ୍ଧୁଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ଗୃହବିବାଦ ଯୋଗୁଁ ଦୁଃଖ ତାଙ୍କର ଆହୁରି ବଢ଼ିଗଲା । ପୁତୁରା ବିବାଦୀ ହେବାରୁ ତାଙ୍କର ନୈତିକ ବଳ କମି ଯାଇଥିବାର ଅନୁମାନ କରାଯାଏ । ହାକିମହୁକୁମାଙ୍କ ପାଖକୁ ଦୌଡ଼ାଦୌଡ଼ି କରିବା, କଚେରିରେ ମକଦ୍ଦମା ଚଳାଇବା ପ୍ରଭୃତି କାର୍ଯ୍ୟରେ ସେ ସର୍ବସ୍ୱାନ୍ତ ହୋଇଗଲେ । ପୁରୁଷାନୁକ୍ରମେ ପଦଗୌରବ ବଜାୟ ରଖି ସଂସାର ଚଳାଇବା ତାଙ୍କ ପକ୍ଷେ କଷ୍ଟକର ହୋଇପଡ଼ିଲା । ସେ ଅନ୍ୟ ଉପାୟ ନ ଦେଖି ଶୁଭାକାଂକ୍ଷୀ ବନ୍ଧୁବାନ୍ଧବଙ୍କ ସାହାଯ୍ୟ ଲୋଡ଼ିଲେ । ଦଳେ ଅର୍ଦ୍ଧଭୁକ୍ତ ବସ୍ତ୍ରହୀନ ଅନୁରକ୍ତ ପାଇକମାନଙ୍କୁ ଧରି ସେ ବିଭିନ୍ନ ଗଡ଼ଜାତ ଓ ଜମିଦାରୀରେ ଥିବା ରାଜା ମହାରାଜାଙ୍କ ବଦାନ୍ୟତା ଉପରେ ନିର୍ଭର କରିବାକୁ ବାଧ ହେଲେ ।

ଇଂରେଜମାନଙ୍କ କୁଶାସନ ଓ ସେମାନଙ୍କର ବାହୁଛାୟା ତଳେ ଥିବା ଅଣଓଡ଼ିଆ କର୍ମଚାରୀମାନଙ୍କ ଦୌରାତ୍ମ୍ୟ ଓ ଅତ୍ୟାଚାର ଜଗବନ୍ଧୁଙ୍କ ମନରେ ସୃଷ୍ଟି କଲା ପ୍ରତିଶୋଧମୂଳକ ମନୋଭାବ । ବ୍ରିଟିଶ ଶାସନର ଅବସାନ ଘଟାଇ ରାଜାଙ୍କୁ ପୁନର୍ବାର ଖୋରଧା ରାଜସିଂହାସନରେ ବସାଇବାପାଇଁ ସେ ମନେ ମନେ ସ୍ଥିର କଲେ । ଏହି ସମୟରେ ଜଣେ ହିତାକାଂକ୍ଷୀ କୃଷ୍ଣଚନ୍ଦ୍ରଙ୍କ ବିରୋଧରେ ଉଚ୍ଚ ନ୍ୟାୟାଳୟରେ ମୋକଦ୍ଦମା କରି ନିଜର ଜମିଦାରୀ ଉପରେ ଦାବି ସାବ୍ୟସ୍ତ କରିବାପାଇଁ ଜଗବନ୍ଧୁଙ୍କୁ ପରାମର୍ଶ ଦେଲେ । ସେ କିନ୍ତୁ ତୀବ୍ର ଘୃଣା ପ୍ରକାଶ କରି କହିଲେ ଯେ ଅତି ବ୍ୟୟସାପେକ୍ଷ ବ୍ରିଟିଶ କୋର୍ଟ କଚେରିରେ ମକଦ୍ଦମା କରିବାପାଇଁ ତାଙ୍କ ନିକଟରେ ଅର୍ଥ ନାହିଁ । ଆଉ ମଧ ସେ ଜଣେ ସଂଭ୍ରାନ୍ତବଂଶୀୟ ଉଚ୍ଚ ପଦାଧିକାରୀ ହୋଇଥିବାରୁ ଜଣେ ନିଃସ୍ୱ ଭିକ୍ଷାଜୀବୀ ହିସାବରେ କଚେରିର ଦ୍ୱାରସ୍ଥ ହେବା ଏକ ଅସମ୍ମାନଜନକ କାର୍ଯ୍ୟ ହେବ । କୋର୍ଟରେ ମକଦ୍ଦମା କଲେ ମଧ ନ୍ୟାୟ ଯେ ମିଳିବ ସେ ସେଥିରେ ସନ୍ଦିହାନ ଥିଲେ । ଜଣେ ବ୍ରିଟିଶ ବାହୁଛାୟା ତଳେ ଆଶ୍ରିତ ଏବଂ ବ୍ରିଟିଶ ଆଇନ କାନୁନରେ ଅଭିଜ୍ଞ ପୁଣି ଧନୀ ବଙ୍ଗାଳୀ ପ୍ରତିବାଦୀ ଆଗରେ ଜଣେ ଗରିବ ଓଡ଼ିଆର ବିଜୟ ଅସମ୍ଭବ – ଏହା ଥିଲା ତାଙ୍କର ଯୁକ୍ତି । ସେ ତେଣୁ ଏହି ପରାମର୍ଶକୁ ପ୍ରତ୍ୟାଖ୍ୟାନ କରିଦେବା ସ୍ୱାଭାବିକ ।

ଏହିପରି ଅବସ୍ଥାରେ ଇଂରେଜ ସରକାରଙ୍କ ନ୍ୟାୟପରାୟଣତା ଉପରେ ଜଗବନ୍ଧୁଙ୍କ ବିଶ୍ୱାସ ତୁଟିଗଲା । ଭବିଷ୍ୟତ୍‌ରେ ଆହୁରି ଦୁଃଖ ଓ ଅପମାନପୂର୍ଣ୍ଣ ଜୀବନଯାପନ କରିବାକୁ ପଡ଼ିବ ବୋଲି ତାଙ୍କର ଆଶଙ୍କା ହେଲା । ତାଙ୍କର ଅନ୍ତରରେ ଇଂରେଜମାନଙ୍କ ପ୍ରତି ତୀବ୍ର ଘୃଣା ଜାତ ହେଲା । ସେ ଶେଷରେ ପାଇକମାନଙ୍କ ନେତୃତ୍ୱ ନେଇ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରିବାକୁ ସ୍ଥିର କଲେ ।

## ଷଷ୍ଠ ପରିଚ୍ଛେଦ

# ପ୍ରସ୍ତୁତି

ଏହାପରେ ଜଗବନ୍ଧୁ ନିଜର କେତେକ ବିଶ୍ୱସ୍ତ ଅନୁଗତମାନଙ୍କୁ ନେଇ ଖୋରଧା ଅଞ୍ଚଳର ବିଭିନ୍ନ ସ୍ଥାନକୁ ଗଲେ । ଅଭାବ ସତ୍ତ୍ୱେ ସେ ରାଜକୀୟ ଢଙ୍ଗରେ ଯାଉଥିଲେ । ପଙ୍ଖାବାଲା ଓ ବତିବାଲା ନେବାର ପୂର୍ବ ଅଭ୍ୟାସ ସେ ଛାଡ଼ିପାରି ନ ଥିଲେ । ୧୮୧୫ରୁ ୧୮୧୭ ମସିହା – ଏହି ଦୁଇ ବର୍ଷ ପର୍ଯ୍ୟନ୍ତ ପୁରୀ ଓ ଖୋରଧାର ବିଭିନ୍ନ ଅଞ୍ଚଳକୁ ଯାଇ ପାଇକ, ଦଳାଇ ଓ ଦଳବେହେରାମାନଙ୍କୁ ସଙ୍ଗଠିତ କଲେ । ସେମାନେ ମଧ୍ୟ ଇଂରେଜ ଶାସନରେ ଅତିଷ୍ଠ ହୋଇପଡ଼ିଥିଲେ । ବହୁ ଦଳାଇ, ଦଳବେହେରା ଜାଗିରିଚ୍ୟୁତ ହୋଇଥିଲେ । ଚାଷୀ ଓ ରୟତମାନେ ମଧ୍ୟ ତଳିତଳାନ୍ତ ହୋଇ ପଡ଼ିଥିଲେ । ସେମାନେ ମଧ୍ୟ ବକ୍ସିଙ୍କ ନେତୃତ୍ୱରେ ଇଂରେଜ ବିରୋଧୀ ଆନ୍ଦୋଳନରେ ଯୋଗ ଦେଲେ । ବକ୍ସି ଜଗବନ୍ଧୁ ବ୍ରିଟିଶ ଶାସନ ବିରୋଧୀ ସଂଗ୍ରାମର ହୋଇପଡ଼ିଲେ ଅବିସମ୍ବାଦିତ ନେତା । କାହିଁକି ବ୍ରିଟିଶ ବିରୋଧୀ ଆନ୍ଦୋଳନର ସେ ନେତୃତ୍ୱ ନେଲେ, ତା'ର ବିବରଣୀ ତାଙ୍କଦ୍ୱାରା ଇଂରେଜ ସରକାରଙ୍କୁ ଦେଇଥିବା ଏକ ଚିଠିରୁ ଜଣାଯାଏ ।

ବକ୍ସି ଜଗବନ୍ଧୁ ମଧ୍ୟ ଜନସମର୍ଥନ ବିପୁଳ ଭାବରେ ପାଇଲେ । ତା'ର ବହୁ କାରଣ ଥିଲା । ପ୍ରଥମରେ, ସେ ଖୋରଧା ରାଜାଙ୍କ ପ୍ରଧାନ ସେନାପତି ଥିଲେ । ସେ ରାଜ୍ୟରେ ଅତି ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ରାଜାଙ୍କ ପରେ ତାଙ୍କର ସ୍ଥାନ ଦ୍ୱିତୀୟ ଥିଲା ବୋଲି ଧରାଯାଉଥିଲା । ସେଭଳି ସମ୍ଭ୍ରାନ୍ତ କୁଳୀନ ବ୍ୟକ୍ତିଙ୍କ ଦୁରବସ୍ଥା ଲୋକମାନଙ୍କ ମନରେ ନୈରାଶ୍ୟ ଓ ଦୁଃଖ ଜାତ କରିବା ସ୍ୱାଭାବିକ ।

ଖୋରଧା ରାଜାଙ୍କ ସାମରିକ କର୍ମଚାରୀ, ଯଥା – ଦଳାଇ, ଦଳବେହେରା ତାଙ୍କ ସହିତ ଯୋଗ ଦେଲେ । ସେଭଳି ଲୋକଙ୍କ ସଂଖ୍ୟା ମଧ୍ୟ ନଗଣ୍ୟ ନ ଥିଲା । ସେମାନଙ୍କ ମଧ୍ୟରୁ କେତେକ ବିଶିଷ୍ଟ ବ୍ୟକ୍ତିବିଶେଷଙ୍କ ନାମ ତଳେ ଦିଆଗଲା ।

ପ୍ରଥମେ କୃଷ୍ଣଚନ୍ଦ୍ର ବିଦ୍ୟାଧର ଭ୍ରମରବର ରାୟଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ଦେବାନ ହରିହର ଭ୍ରମରବର ରାୟଙ୍କ ପୁତ୍ର ଥିଲେ । ସେ ଖୋରଧା ଅନ୍ତର୍ଗତ ଗଡ଼ଚିତ୍ରିର ଜମିଦାର ଥିଲେ । ବ୍ରିଟିଶ ଶାସନ ଆରମ୍ଭରେ ତାଙ୍କ ଜମିଦାରୀକୁ ଖାସ୍ କରି ଦିଆଯାଇଥିଲା । ପୁରୁଷାନୁକ୍ରମେ ତାହାକୁ ହରାଇ ସେ ହୋଇଥିଲେ ଦାଣ୍ଡର ଭିକାରି ।

ଗୋପାଳ ଛୋଟରାୟ ବିଂଝଗିରିର ପାଇକ ସର୍ଦ୍ଦାର ଥିଲେ । ସେ ଖଣ୍ଡାଏତ ଥିଲେ । ତାଙ୍କର ବୟସ ଥିଲା ୪୦ । ସେ ବଡ଼ ଶିକାରୀ ଭାବେ ନାମ କରିଥିଲେ ।

ଦାରୁଠେଙ୍ଗ ଇଂରେଜ ବିରୋଧୀ ଆନ୍ଦୋଳନର ବଡ଼ କେନ୍ଦ୍ର ଥିଲା । ଏହାର ଦଳାଇ ଥିଲେ ପ୍ରହ୍ଲାଦ ଛୋଟରାୟ । ୧୮୧୭ ମସିହା ଆଡ଼କୁ ତାଙ୍କୁ ୪୫ ବର୍ଷ ବୟସ ହୋଇଥିଲା । ସେ ଇଂରେଜ ବିରୋଧୀ ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଆଉ ଜଣେ ଦଳାଇ ହେଲେ ପିଣ୍ଡିକି ବାହୁବଳେନ୍ଦ୍ର । ସେ ଗଜପତି ମହାରାଜାଙ୍କଠାରୁ ନିଷ୍କର ଜମି ଭୋଗ କରୁଥିଲେ । ସୈନ୍ୟବାହିନୀରେ ମଧ୍ୟ ଯୋଗ ଦେଇଥିଲେ । ସେ ଇଂରେଜମାନଙ୍କୁ ନିକାଲି ଦେବାପାଇଁ ଏକ ଶକ୍ତିଶାଳୀ ଯୁବବାହିନୀ ଗଠନ କରିଥିଲେ । ସେହି ଯୁବବାହିନୀ ସରକାରୀ ଅଫିସମାନଙ୍କରେ ଅଗ୍ନିସଂଯୋଗ କରୁଥିଲେ । ଖଜଣାଖାନା ଲୁଟି ନେଉଥିଲେ । ସେ ଖୋରଧା ଅଞ୍ଚଳରେ ଗଣ୍ଡଗୋଳ ଭିଆଇ ଦୁର୍ଗମ ଅରଣ୍ୟ ମଧ୍ୟରେ ଲୁଚି ଯାଉଥିଲେ । ୧୮୧୨ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ସରକାର ପିଣ୍ଡିକି ଓ ତାଙ୍କ ଅନୁଚରମାନଙ୍କ ବିରୋଧରେ ମକଦ୍ଦମା ରୁଜୁ କଲେ । ତାଙ୍କୁ ଦ୍ୱୀପାନ୍ତର ଦଣ୍ଡ ହେଲା । ମାତ୍ର ବାଟରେ ସେ ପ୍ରହରୀମାନଙ୍କ ଆଖିରେ ଧୂଳିଦେଇ ଖସି ଯାଇଥିଲେ । ୧୮୧୭ ମସିହାରେ ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ସଂଗ୍ରାମ ଆରମ୍ଭ ହେଲା । ପିଣ୍ଡିକି ତାଙ୍କ ଦଳବଳ ସହ ଏହି ସଂଗ୍ରାମରେ ଯୋଗ ଦେଲେ । ତାଙ୍କର ମୁଖ୍ୟ ସହଯୋଗୀ ଥିଲେ ନିଜ ଗ୍ରାମ ଦାରୁଠେଙ୍ଗର ସାଧୁଚରଣ ମଙ୍ଗରାଜ ଓ ବିଷ୍ଣୁ ପାଇକରାୟ । ବକ୍‌ସି ଜଗବନ୍ଧୁଙ୍କ ପନ୍ଦର ଜଣ ବିଶ୍ୱସ୍ତ ସରଦାରମାନଙ୍କ ମଧ୍ୟରେ ପିଣ୍ଡିକି ବାହୁବଳେନ୍ଦ୍ର ଥିଲେ ଅନ୍ୟତମ ।

ମିର ହାଇଦର ଅଲ୍ଲି ଥିଲେ ଡୁମୁଡୁମାର ଦଳବେହେରା । ସେ ଯଦୁପୁର ଗ୍ରାମ ନିବାସୀ ଥିଲେ ।

ଆଉ ଜଣେ ସରଦାର ଥିଲେ ଜଗବନ୍ଧୁ ସାନ୍ତରା । ସେ ଖୋରଧା ନିକଟସ୍ଥ ଯାଁଳା ଗ୍ରାମନିବାସୀ ଥିଲେ । ବନ୍ଧୁ ସାନ୍ତରା ଗଡ଼କୁହୁଡ଼ିର ଦଳେଇ ଥିଲେ । ଖଲିକୋଟ ଓ ବାଣପୁର ମଧ୍ୟରେ ଥିବା କେଶପୁର ଗ୍ରାମର କିଶୋର ରଥୀ ସାମନ୍ତସିଂହାର ଜଗବନ୍ଧୁଙ୍କର ଜଣେ ମୁଖ୍ୟ ସହଯୋଗୀ ଥିଲେ ।

ଅରାଙ୍ଗର ଦଳବେହେରା ଦୀନବନ୍ଧୁ ସାନ୍ତରା ମଧ୍ୟ ଶହେ ଜଣ ଘୁମୁସର ପାଇକଙ୍କୁ ଓ ନିଜ ଅଞ୍ଚଳର ଶହେ ଜଣ ପାଇକଙ୍କ ସହ ଜଗବନ୍ଧୁଙ୍କ ସଂଗ୍ରାମରେ ଯୋଗ ଦେଲେ ।

ବାଣପୁର ଅଞ୍ଚଳର ବ୍ରଜାନନ୍ଦ ସିଂହ ଜଗବନ୍ଧୁଙ୍କର ସହଯୋଗୀ ଥିଲେ । ଏହାଛଡ଼ା ବାଣପୁର ଥାନା ଭାଟପଡ଼ା ଗ୍ରାମନିବାସୀ ନନ୍ଦ ସାନ୍ତରା ଓ ପଞ୍ଚୁପଲ୍ଲୀ ଦଳବେହେରା ହରି ମାନସିଂହ ଜଗବନ୍ଧୁଙ୍କୁ ସାହାଯ୍ୟ ଦେବାକୁ ଆଗେଇ ଆସିଲେ ।

ଜଟଣୀ ଥାନା ଗଙ୍ଗପଡ଼ାର ସଂଗ୍ରାମୀ ହେଲେ ରାମଚନ୍ଦ୍ର ସାମନ୍ତସିଂହାର ଓ ଅନ୍ତର୍ଯାମୀ ପାହାଡ଼ସିଂହ । ଗଙ୍ଗପଡ଼ାର ଦଳବେହେରା ଭାଗୁ ହରିଚନ୍ଦନ ଓ ତାଙ୍କ ସାନ ଭାଇ ମାଖନ ସିଂହ ମଧ୍ୟ ଜଗବନ୍ଧୁଙ୍କର ସହଯୋଗୀ ହେଲେ ।

ଧରମୁ ସୁବୁଦ୍ଧି ବେଗୁନିଆ ଥାନା ଅନ୍ତର୍ଗତ ସିକୋ ଅଧିବାସୀ ଥିଲେ । ସେହି ଥାନାର ନାଲସିଂହ ଗ୍ରାମନିବାସୀ ପୁରୁଷୋତ୍ତମ ମାନସିଂହ ମଧ୍ୟ ଜଗବନ୍ଧୁଙ୍କ ଅନୁଗାମୀ ହେଲେ । ସିକୋ ଗ୍ରାମର ଜଣେ ପ୍ରଧାନ ସରଦାର ଥିଲେ ଦାମ ସୁବୁଦ୍ଧି ।

ଟାଙ୍ଗୀ ଥାନା ବଡ଼ପାରି ଗ୍ରାମନିବାସୀ ଉପେନ୍ଦ୍ର ଜଗଦେବ ଓ ସେହି ଥାନା ଅନ୍ତର୍ଗତ ରାମେଶ୍ୱର ଗ୍ରାମର ଧରମୁ ହରିଚନ୍ଦନ ବ୍ରିଟିଶ ବିରୋଧୀ ସଂଗ୍ରାମରେ ଯୋଗ ଦେଲେ ।

ଡେଲାଙ୍ଗ ଥାନାର ଯେଉଁମାନେ ଜଗବନ୍ଧୁଙ୍କ ସହିତ ଯୋଗ ଦେଲେ ସେମାନେ ହେଲେ ଗଡ଼ଝାଡ଼ପଡ଼ା ନିବାସୀ ଭଗବାନ ସିଂହ ଓ ରେଙ୍ଗଲ ଗ୍ରାମନିବାସୀ କରୁଣାକର ପରମଗୁରୁ ।

ଖୋରଧା ଥାନା କାଇପଦର ଗ୍ରାମନିବାସୀ ବିଷ୍ଣୁ ହରିଚନ୍ଦନ ମଧ୍ୟ ବିଦ୍ରୋହରେ ଯୋଗ ଦେଲେ । ସେହି ଗ୍ରାମର ଜଣେ ପ୍ରଧାନ ଭୂମିକା ଗ୍ରହଣ କଲେ ଆଦିକନ୍ଦ ବିଦ୍ୟାଧର ।

ଅନ୍ୟ ଯେଉଁମାନେ ସଂଗ୍ରାମକୁ ଡେଇଁପଡ଼ିଲେ, ସେମାନେ ହେଲେ –

୧. ଗୌରାଙ୍ଗ ବରିଶଲ
୨. କଳେଇ ମାନସିଂହ
୩. ବିଜେନ ସିଂହ
୪. ନୀଳାଦ୍ରି ସାମନ୍ତରା
୫. ସର୍ଦ୍ଦାର ଖାଁ
୬. ନସୃଲା
୭. ନରୋତ୍ତମ ବିଶ୍ୱାଳ
୮. ବଲ୍ଲଭରାୟ , ୯. ବିଦ୍ୟାଧର ମହାନ୍ତି

**ଘୁମୁସର ରାଜାଙ୍କ ସହଯୋଗ** – ଓଡ଼ିଶାର ଦକ୍ଷିଣରେ ଅବସ୍ଥିତ ଘୁମୁସର ଏକ ଗଡ଼ଜାତ ଥିଲା । ଏହା ଏକ ଘଞ୍ଚ ଜଙ୍ଗଲପୂର୍ଣ୍ଣ ଅଞ୍ଚଳ । ଏହାର ଉତ୍ତରରେ ଦଶପଲ୍ଲା, ଉତ୍ତର-ପୂର୍ବରେ ନୟାଗଡ଼, ବଉଦ ପ୍ରଭୃତି ନିବିଡ଼ ଅରଣ୍ୟ ପରିବେଷ୍ଟିତ ଅଞ୍ଚଳ । ଘୁମୁସର ରାଜବଂଶ ସଙ୍ଗେ ଖୋରଧା ରାଜପରିବାରର ସମ୍ପର୍କ ଭଲ ଥିଲା । ଜଗବନ୍ଧୁ ମଧ୍ୟ ଘୁମୁସର ରାଜବଂଶ ସହିତ ଭଲ ଭାବରେ ପରିଚିତ ଥିଲେ । ନିକଟସ୍ଥ ଶେରଗଡ଼ ରାଜା ଜଗବନ୍ଧୁଙ୍କର ଶ୍ୱଶୁର ଥିଲେ ।

ଘୁମୁସର ରାଜନୀତିକ ପରିସ୍ଥିତି ମଧ୍ୟ ଇଂରେଜ ବିରୋଧୀ ଥିଲା । ସେତେବେଳକାର ମାନ୍ଦ୍ରାଜ ସରକାର ଘୁମୁସର ଗଡ଼ଜାତରୁ ଚଢ଼ା ଦରରେ କର ଆଦାୟ କରୁଥିଲେ । ଶାସନ ପରିଚାଳନାରେ ମଧ୍ୟ ବାରମ୍ବାର ହସ୍ତକ୍ଷେପ

କରୁଥିଲେ । ଘୁମୁସରର ରାଜା ତଥା ଜନସାଧାରଣ ଏଥିରେ ଉଦ୍‌କ୍ଷିପ୍ତ ହୋଇପଡ଼ିଥିଲେ । ଇଂରେଜ ସରକାର ଘୁମୁସରର ରାଜା ଶ୍ରୀକର ଭଞ୍ଜଙ୍କ ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ବନ୍ଦୀ କରି ରଖିଲେ । ଶ୍ରୀକର ଭଞ୍ଜ ଶାସନ ଦାୟିତ୍ୱ ଚାହିଁଲେ ମଧ୍ୟ ବ୍ରିଟିଶ ସରକାର ଏଥିରେ କର୍ଣ୍ଣପାତ କଲେ ନାହିଁ । ଫଳରେ ଶ୍ରୀକର ଭଞ୍ଜ କ୍ରୋଧାନ୍ୱିତ ହୋଇ ବ୍ରିଟିଶ ସରକାରଙ୍କ ବିରୋଧାଚରଣ କଲେ । ସେ ପୁରୀ ଆସି ଜଗବନ୍ଧୁଙ୍କୁ ଭେଟିଲେ ଓ ତାଙ୍କ ସହିତ ବ୍ରିଟିଶ ବିରୋଧୀ କାର୍ଯ୍ୟରେ ଲିପ୍ତ ହେଲେ । ସେ ଇଂରେଜ ସରକାରଙ୍କ ବିରୋଧରେ ସଂଗ୍ରାମ କରିବାକୁ ପ୍ରକାଶ୍ୟଭାବରେ ମତାଇଲେ । ବ୍ରିଟିଶ ବିରୋଧୀ କାର୍ଯ୍ୟକଳାପ ଯୋଗୁଁ ଶ୍ରୀକର ଭଞ୍ଜଙ୍କୁ ବନ୍ଦୀ କରାଯାଇ ବ୍ରହ୍ମପୁର ଜେଲରେ ରଖାଗଲା ।

ଘୁମୁସରରେ ବ୍ରିଟିଶ ବିରୋଧୀ ଆନ୍ଦୋଳନ କ୍ରମାଗତ ଭାବେ ଚାଲିଲା । ୧୮୧୬ ଖ୍ରୀଷ୍ଟାବ୍ଦରେ ପିଣ୍ଡାରିମାନେ ଘୁମୁସର ଆକ୍ରମଣ କରି ବିଶୃଙ୍ଖଳା ସୃଷ୍ଟି କଲେ । ତା'ର ପର ବର୍ଷ ୧୮୧୭ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସରେ ଘୁମୁସର ଅଞ୍ଚଳର କନ୍ଧମାନେ ବିଦ୍ରୋହ କଲେ । ସେତେବେଳେ ଇଂରେଜ କଲେକ୍ଟର ଥିଲେ ସ୍ୱଟିସ୍ ଉଡ୍ । ସେ ଯେତେ ଚେଷ୍ଟା କଲେ ବିଦ୍ରୋହ ବା ବିଶୃଙ୍ଖଳା ଦମନ କରିପାରିଲେ ନାହିଁ ।

ଘୁମୁସର ଅଞ୍ଚଳର ଏହି କ୍ରମାଗତ ଗଣ୍ଡଗୋଳ ଓ ଅଶାନ୍ତ ପରିସ୍ଥିତି ଜଗବନ୍ଧୁଙ୍କୁ ପ୍ରେରଣା ଯୋଗାଇବା ସ୍ୱାଭାବିକ । ସେ ତାହାର ପୂର୍ଣ୍ଣ ଉପଯୋଗ କରିବାକୁ ଆଗଭର ହେଲେ ।

**ମରହଟ୍ଟାମାନଙ୍କ ସହିତ ସମ୍ପର୍କ** — ବକ୍‌ସି ଜଗବନ୍ଧୁ ମରହଟ୍ଟାମାନଙ୍କ ସାହାଯ୍ୟ ଓ ସହଯୋଗ ପାଇବାକୁ ଚେଷ୍ଟା କରିଥିଲେ । ସେମାନଙ୍କଠାରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ ସହିତ ପାଇକମାନଙ୍କୁ ସଂଗଠିତ କରି ଇଂରେଜଙ୍କ ବିରୋଧରେ ଲଢ଼େଇ କରିବାକୁ ବକ୍‌ସି ଉଦ୍ୟମ ଯେ ଚଳାଇଥିଲେ, ଏଥିରେ ସନ୍ଦେହ ନାହିଁ । ଓଡ଼ିଶାର ପଶ୍ଚିମ ଅଞ୍ଚଳ ଦେଇ ମରହଟ୍ଟାମାନଙ୍କ ଆକ୍ରମଣ ଓ ଓଡ଼ିଶା ଭିତରେ ବକ୍‌ସିଙ୍କ ସଂଗ୍ରାମ ଇଂରେଜମାନଙ୍କ ସ୍ଥିତିକୁ ଦୁର୍ବଳ କରିଦେବା ଓ ଏପରିକି ଓଡ଼ିଶାରୁ ଇଂରେଜ ଶାସନ ଲୋପ ପାଇବାର ସମ୍ଭାବନା ଥିଲା । ଇଂରେଜ ଶାସନ ଲୋପ ହେଲା ପରେ ମରହଟ୍ଟା ଶାସନ ପୁନଃପ୍ରତିଷ୍ଠିତ ହେବା ମରହଟ୍ଟାମାନେ ଚାହିଁଥିବା ସ୍ୱାଭାବିକ ।

ଜଗବନ୍ଧୁ ଓ ମରହଟ୍ଟାମାନଙ୍କ ମଧ୍ୟରେ ରାଜିନାମା ଅନୁଯାୟୀ ଭୂପଭରଣ ସିଂହ ଅନ୍ୟାନ୍ୟ ଯାତ୍ରୀମାନଙ୍କ ସହ ପୁରୀ ଜଗନ୍ନାଥ ଦର୍ଶନରେ ଆସିବେ ଓ ସେହି ସମୟରେ ବକ୍‌ସି ପୁରୀ ଆକ୍ରମଣ କରିଥିବା ଯୋଜନା ହୋଇଥିବା ଅନୁମାନ କରାଯାଏ ।

**ରାଜାଙ୍କ ସଙ୍ଗେ ଗୋପନ ସାକ୍ଷାତ୍** — ମହାନ୍ ପରାକ୍ରମୀ ବ୍ରିଟିଶ ସରକାରଙ୍କୁ ତଡ଼ିବା ଏତେ ସହଜ ନୁହେଁ ବୋଲି ଜଗବନ୍ଧୁ ଉପଲବ୍ଧି କରିଥିଲେ ।

ସେ ତେଣୁ ଖୋରଧା ରାଜାଙ୍କୁ ଇଂରେଜ ବିରୋଧୀ ସଂଗ୍ରାମରେ ସାମିଲ କରିବାପାଇଁ ସ୍ଥିର କଲେ । ରାଜାଙ୍କ ପ୍ରତି ସମସ୍ତ ଗଡ଼ଜାତ ରାଜାମାନଙ୍କର ସମ୍ମାନ ଅତୁଟ ଥିଲା । ସେମାନେ ତାଙ୍କୁ ଠାକୁରରାଜା ବୋଲି ଭାବି ଭକ୍ତି କରୁଥିଲେ । ତେଣୁ ରାଜାଙ୍କ ନାମ, ବ୍ୟକ୍ତିତ୍ୱ ଓ ଧାର୍ମିକ ପ୍ରଭାବକୁ ସେ ସଂଗ୍ରାମରେ ବ୍ୟବହାର କରିବା ଶ୍ରେୟସ୍କର ମନେ କରି ରାଜାଙ୍କୁ ଗୋପନରେ ଭେଟି ଆଲୋଚନା କରିଥିବା ଜଣାଯାଏ । ବିଶିଷ୍ଟ ଐତିହାସିକ ଡଃ ଭବାନୀଚରଣ ରାୟ ମଧ୍ୟ ଗୁପ୍ତ ଭାବରେ ସେ (ଜଗବନ୍ଧୁ) ରାଜାଙ୍କ ସଙ୍ଗେ ଆଲୋଚନା କରିଥିବାର ପ୍ରମାଣ ଅଛି ବୋଲି 'ବିପ୍ଳବୀବୀର ଜଗବନ୍ଧୁ' ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

ସେ ପୁଣି ଲେଖିଛନ୍ତି – ''ଏହି ପରିପ୍ରେକ୍ଷୀରେ ପୁରୀରେ ଅବସ୍ଥିତ ଠାକୁରରାଜା (ଦ୍ୱିତୀୟ) ମୁକୁନ୍ଦଦେବଙ୍କଠାରୁ ମୌଖିକ ଅନୁମତି ଆଣି ଜଗବନ୍ଧୁଙ୍କ ନିର୍ଦ୍ଦେଶରେ ରାଜାଙ୍କ ନାମରେ ତାଳପତ୍ରରେ ଚିଟାଉମାନ ଲେଖାଯାଇ ଓଡ଼ିଶାର ସମ୍ଭ୍ରାନ୍ତ ଶ୍ରେଣୀୟ ଏବଂ ସମସ୍ତ ଗଡ଼ଜାତ ରାଜାମାନଙ୍କୁ ବ୍ରିଟିଶ ବିଦ୍ରୋହୀ ବିପ୍ଳବ ଯଜ୍ଞକୁ ନିମନ୍ତ୍ରଣ କରାଯାଇଥିଲା ।''

ଜଗବନ୍ଧୁଙ୍କ ନିମନ୍ତ୍ରଣ ଅଭୂତପୂର୍ବ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କଲା । କନିକା, କୁଜଙ୍ଗ ଭଳି ରାଜନ୍ୟ ମଣ୍ଡଳୀ ଜଗବନ୍ଧୁଙ୍କ ସଶସ୍ତ୍ର ସଂଗ୍ରାମରେ ଯୋଗ ଦେଲେ । ବହୁ ପଡ଼ୋଶୀ ଗଡ଼ଜାତ ରାଜାମାନେ ମଧ୍ୟ ଗୋପନରେ ସମସ୍ତ ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ବହୁ ଜମିଦାର ଏହାକୁ ମଧ୍ୟ ନୈତିକ ସମର୍ଥନ ଦେଲେ । ପ୍ରାୟ ସମସ୍ତ ଓଡ଼ିଶାବାସୀଙ୍କୁ ବ୍ରିଟିଶ ବିରୋଧୀ ସଂଗ୍ରାମରେ ଭାଗୀଦାର କରିବାକୁ ଜଗବନ୍ଧୁ ଯେ ଉଦ୍ୟମ କରିଥିଲେ, ଏଥିରେ ସନ୍ଦେହ ନାହିଁ । ଏ ସଂକ୍ରାନ୍ତରେ ବିଶିଷ୍ଟ ଐତିହାସିକ ଡଃ ଭବାନୀଚରଣ ରାୟଙ୍କ ମତାମତ ଉଲ୍ଲେଖଯୋଗ୍ୟ – ''ସମସ୍ତ ବ୍ରିଟିଶ ବିରୋଧୀ ଶକ୍ତି – ଅନ୍ତଃଶକ୍ତି ବା ବହିଃଶକ୍ତି ହେଉ – ସେଗୁଡ଼ିକୁ ସଂଗଠିତ ଭାବରେ ଠୁଳ କରିବା ଜଗବନ୍ଧୁଙ୍କ ଯୋଜନା ଅନ୍ତର୍ଭୁକ୍ତ ଥିଲା । ସେ ଘୁମୁସରର ବ୍ରିଟିଶ ବିରୋଧୀ ଶକ୍ତିର ସାହାଯ୍ୟ ଆଶା କରିବା ସହିତ ଓଡ଼ିଶାରୁ ବିତାଡ଼ିତ ମରାଠା ମୁଖ୍ୟମାନଙ୍କ ସଙ୍ଗେ ଯୋଗସୂତ୍ର ରଖିବାପାଇଁ ମଧ୍ୟ ଚେଷ୍ଟିତ ଥିଲେ । ଲୋକଲୋଚନ ଅଗୋଚରରେ, ଗୁପ୍ତ ଭାବରେ ପତ୍ରବାହକଦ୍ୱାରା ପରାଜିତ ଓ ଓଡ଼ିଶା ଛାଡ଼ି ଚାଲିଯାଇଥିବା କେତେକ ମରାଠା ମୁଖ୍ୟମାନଙ୍କଠାରୁ ସାହାଯ୍ୟ ପାଇବାପାଇଁ ସେ ପ୍ରଚେଷ୍ଟା କରିଥିଲେ ।''

ଖୋରଧାର ଜଣାଶୁଣା ସରବରାକାର ଚରଣ ପଟ୍ଟନାୟକ ମଧ୍ୟ ଜଗବନ୍ଧୁଙ୍କର ମରହଟ୍ଟାମାନଙ୍କ ସହିତ ସମ୍ପର୍କ ଥିବା କଥା ପୁଲିସ ଦାରୋଗା ମିର୍ଜା ମେହେଦୀଙ୍କୁ ଜଣାଇ ଦେଇଥିଲେ । ଏହି ଗୁପ୍ତ ଖବର ପାଇ ମିର୍ଜା ଜଗବନ୍ଧୁଙ୍କୁ ଗିରଫ କରିବାକୁ ବସିଲେ । ପୋଲିସ ଦୃଷ୍ଟି ଏଡ଼ାଇବାପାଇଁ ଜଗବନ୍ଧୁଙ୍କୁ ଆତ୍ମଗୋପନ କରିବାକୁ ପଡୁଥିଲା । ସେ ତେଣୁ ଅବିଳମ୍ବେ ସଂଗ୍ରାମ ଆରମ୍ଭ କରିବାକୁ ବସିଲେ ।

## ସପ୍ତମ ପରିଚ୍ଛେଦ

# ସଂଗ୍ରାମ ଆରମ୍ଭ

ଗଡ଼ରୋଡ଼ଙ୍ଗ ହିଁ ବିପ୍ଲବୀମାନଙ୍କର ପ୍ରଥମ ଶିବିର ହୋଇଥିବା ଅନୁମାନ କରାଯାଏ । ରୋଡ଼ଙ୍ଗର ନିକଟବର୍ତ୍ତୀ ଅଞ୍ଚଳର ପାଇକ, ଦଳାଇ, ଦଳବେହେରାମାନେ ଓ ମୁଖିଆ ଲୋକେ ବକ୍ସିଙ୍କ ସହିତ ଯୋଗ ଦେଲେ । ଦେବାନ କୃଷ୍ଣଚନ୍ଦ୍ର ଭ୍ରମରବର ମଧ୍ୟ ଜଗବନ୍ଧୁଙ୍କର ପ୍ରଧାନ ସହକର୍ମୀ ହେଲେ । ଖୋରଧା, ବାଣପୁର, ଲେମ୍ବାଇ ପ୍ରଭୃତି ଅଞ୍ଚଳରେ ପାଇକମାନଙ୍କୁ ସଙ୍ଗଠିତ କରିବାପାଇଁ ମୁଖିଆ ଲୋକମାନଙ୍କୁ ପଠାଗଲା ।

**ଜଗବନ୍ଧୁ ପଟ୍ଟନାୟକଙ୍କୁ ହତ୍ୟା** – ପ୍ରଥମେ ହିଁ ପାଇକମାନଙ୍କ କ୍ରୋଧ ବକ୍ସି ଜଗବନ୍ଧୁଙ୍କ ଗୁମାସ୍ତା ଜଗବନ୍ଧୁ ପଟ୍ଟନାୟକଙ୍କ ଉପରେ ପଡ଼ିଲା । ସେ ଜଗବନ୍ଧୁଙ୍କର ଚାଷଜମି ବୁଝାବୁଝି କରୁଥିଲେ । କିନ୍ତୁ ତାଙ୍କ ଦୁରବସ୍ଥାର ସୁଯୋଗ ନେଇ କୃଷ୍ଣଚନ୍ଦ୍ର ସିଂହଙ୍କଠାରୁ ନିଜ ନାମରେ କବଲା କରିନେଇଥିବା ପୂର୍ବରୁ ବର୍ଣ୍ଣିତ । ଜଗବନ୍ଧୁ ପଟ୍ଟନାୟକଙ୍କ ପରିବାରର କେତେକ ବ୍ୟକ୍ତି ଜଗବନ୍ଧୁଙ୍କ ବିରୋଧରେ ପୁଲିସକୁ ଖବର ଦେଉଥିଲେ । ବିଦ୍ରୋହ ଆରମ୍ଭରେ ହିଁ ଜଗବନ୍ଧୁ ପଟ୍ଟନାୟକ ଓ ତାଙ୍କ ପରିବାରର କେତେକ ସଦସ୍ୟଙ୍କୁ ହତ୍ୟା କରାଗଲା । ଏବେ ସୁଦ୍ଧା ଗଡ଼ରୋଡ଼ଙ୍ଗର ଜଗବନ୍ଧୁଙ୍କ ଗୃହର ଦକ୍ଷିଣରେ ଥିବା 'ପଟ୍ଟନାୟକ ମରା ବରଗଛ' ସେହି ସ୍ମୃତି ବହନ କରି ରହିଛି ।

**ବାଣପୁର ଆକ୍ରମଣ** – ଏଥିମଧ୍ୟରେ ପୂର୍ବ ଯୋଜନା ଅନୁଯାୟୀ ଘୁମୁସରରୁ ପ୍ରାୟ ଚାରି ଶହ କନ୍ଧ ମାର୍ଚ୍ଚ ମାସ ଶେଷ ଆଡ଼କୁ ପଶିଆସି ଲୁଟତରାଜ ଆରମ୍ଭ କଲେ । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକମାନେ ବାଣପୁର ଆଡ଼କୁ ଅଗ୍ରସର ହେଲେ । ସେମାନେ ବାଣପୁରରେ ପହଞ୍ଚି ବାଣପୁର ଥାନା ଉପରେ ଆକ୍ରମଣ କଲେ । ସିପାହୀ ଓ ଦାରୋଗାମାନେ ଥାନାକୁ ରକ୍ଷା କରିବାକୁ ସମର୍ଥ ହେଲେ ନାହିଁ । ଅନ୍ୟାନ୍ୟ ସରକାରୀ କୋଠା ଉପରେ ମଧ୍ୟ ବିପ୍ଳବୀମାନେ ଚଢ଼ାଉ କରି ଧ୍ୱଂସ କଲେ । ସେମାନେ ସେଠାରେ ପ୍ରାୟ ଏକ ଶହ ଲୋକଙ୍କୁ ହତ୍ୟା କଲେ । ଖଜଣାଖାନା ଲୁଟ କରି ପ୍ରାୟ ୧୫୦୦୦ ଟଙ୍କା ନେଇ ପଳାଇଲେ । ଚିଲିକା କୂଳରେ ଲୁଣ ଏଜେଣ୍ଟ ବେଚରଙ୍କୁ ଧରିବାପାଇଁ ବିଦ୍ରୋହୀମାନେ ଧାଇଁଲେ । ବେଚର କିନ୍ତୁ ଖସି ପଳାଇଲେ । ତାଙ୍କର ଡଙ୍ଗାଟି ବିପ୍ଳବୀଙ୍କ ହାତରେ ପଡ଼ିଲା ।

**ଖୋରଧା ଆକ୍ରମଣ** – ବକ୍‌ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କ ନେତୃତ୍ୱରେ ପାଇକମାନେ ଏହାପରେ ଖୋରଧା ସହରଆଡ଼କୁ ଅଗ୍ରସର ହେଲେ । ବାଟରେ ଶହ ଶହ ସଂଖ୍ୟାରେ ଦଳାଇ ଓ ଦଳବେହେରାମାନେ ଯୋଗ ଦେଲେ । ଖୋରଧା ସହରର ଅଧିବାସୀମାନେ ବିଦ୍ରୋହୀମାନଙ୍କୁ ସ୍ୱାଗତ କଲେ । ବିଦ୍ରୋହୀମାନଙ୍କ ସଂଖ୍ୟା କ୍ରମେ ବୃଦ୍ଧି ପାଇଲା । ସରକାରୀ କର୍ମଚାରୀମାନେ ସହର ରକ୍ଷା କରିବାର ବ୍ୟବସ୍ଥା ନ କରି ଜୀବନରକ୍ଷାପାଇଁ ଅନ୍ୟଆଡ଼େ ପଳାଇଲେ । ଇଂରେଜ ହାକିମମାନେ କଟକ ପଳାଇଲେ । ବିଦ୍ରୋହୀମାନେ ସରକାରୀ କୋଠାବାଡ଼ି ଧ୍ୱଂସ କରିଦେଲେ । ଖଜଣାଖାନା ମଧ୍ୟ ଲୁଟ କଲେ । ତହବିଲ ଟଙ୍କା ଲୋକମାନଙ୍କ ମଧ୍ୟରେ ବାଣ୍ଟି ଦିଆଗଲା । ଜଣେ ବରକନ୍ଦାଜ ଅର୍ଥାତ୍ ଜଗୁଆଳ ପୁଲିସ ବାଧା ଦେବାରୁ ତାକୁ ହତ୍ୟା କରାଗଲା । ଅନ୍ୟ ଜଣେ ଜଗୁଆଳକୁ ସେଠାରୁ ଟେକି ନିଆଗଲା । ଅତ୍ୟାଚାରୀ ପୋଲିସ ଦାରୋଗା ମିର୍ଜା ମେହେଦୀ ମଧ୍ୟ ପଳାୟନ କଲେ । ଥାନା ପୋଡ଼ି ଦିଆଗଲା । ଜଣେ ବନ୍ଧୁକଧାରୀ ପ୍ରହରୀ ବାଧାଦେବାରୁ ତାକୁ ହତ୍ୟା କରାଗଲା । ଅନ୍ୟ ଜଣେ ଆଘାତପ୍ରାପ୍ତ ହେଲା । ଦାରୋଗାଙ୍କ ସମ୍ପତ୍ତି ଲୁଟ କରିବା ସଙ୍ଗେ ସଙ୍ଗେ ତାଙ୍କ ଘର ପୋଡ଼ି ଦିଆଗଲା । ତାଙ୍କର ଜଣେ ଚାକରକୁ ମଧ୍ୟ ହତ୍ୟା କରାଗଲା । ଏହାପରେ କଚେରି, ମୁନସିଫ କଚେରି ଓ ତହସିଲଦାରଙ୍କ ଅଫିସ ପୋଡ଼ି ଦିଆଗଲା । ବିଦ୍ରୋହୀମାନଙ୍କର କ୍ରୋଧର ଶିକାର ହେଲେ ସରକାରୀ କର୍ମଚାରୀମାନେ ବା ଅଣଓଡ଼ିଆ ଜମିଦାରମାନେ । ସେମାନେ ଖୋରଧାର ଅଧିବାସୀମାନଙ୍କର କୌଣସି କ୍ଷତି କରି ନ ଥିଲେ ।

କଟକ ଜିଲ୍ଲା ମାଜିଷ୍ଟ୍ରେଟ ଇ. ଇମ୍ପେ ୧୮୧୭ ମାର୍ଚ୍ଚ ମାସ ୩୦ ତାରିଖରେ ସରକାରଙ୍କୁ ଜଣାଇଲେ ଯେ ବିଦ୍ରୋହୀମାନେ ଖୋରଧାର ପୁଲିସ ଥାନା, ମୁନସିଫ କଚେରି, ତହସିଲଦାରଙ୍କ ଅଫିସ ଓ ସରକାରଙ୍କ ସମ୍ପୃକ୍ତ ଲୋକମାନଙ୍କ ଘର ପୋଡ଼ି ଦେଇଛନ୍ତି ବା ଲୁଟି ନେଇଛନ୍ତି; କିନ୍ତୁ ସେମାନେ ଜନସାଧାରଣଙ୍କ କୌଣସି କ୍ଷତି କରି ନାହାନ୍ତି ।

**ଦେବାନ ସଦାଶିବ ରାୟଙ୍କୁ ହତ୍ୟା** – ୧୮୦୪ ଜାନୁୟାରୀ ମାସ ୩ ତାରିଖରେ ଇଂରେଜମାନେ ସମ୍ବଲପୁର ଅଧିକାର କଲେ । ମରହଟ୍ଟା ଶାସନାଧୀନ ସମ୍ବଲପୁର, ସୋନପୁର, ବୌଦ, ରାୟଗଡ଼ ପ୍ରଭୃତିର ମୁଖ୍ୟମାନେ ଦେଓଗାଁ ଶାନ୍ତି ଓ ମୈତ୍ରୀ ଚୁକ୍ତିରେ ସ୍ୱାକ୍ଷର କଲେ ଓ ଇଂରେଜମାନଙ୍କ ଆଧିପତ୍ୟ ସ୍ୱୀକାର କଲେ । ସମ୍ବଲପୁର ରାଣୀ ରତ୍ନକୁମାରୀ ମରହଟ୍ଟାମାନଙ୍କଠାରୁ ବିପଦ ଆଶଙ୍କା କରିବାରୁ ଇଂରେଜ କର୍ତ୍ତୃପକ୍ଷ ତାଙ୍କୁ ଖଣ୍ଡପଡ଼ା ନିକଟସ୍ଥ ପାଞ୍ଚଗଡ଼ରେ ଅବସ୍ଥାପିତ କଲେ ।

ତାଙ୍କ ଦେବାନ ସଦାଶିବ ରାୟ ଅତ୍ୟାଚାରୀ ଥିଲେ । ବାଣପୁରରେ ବିଦ୍ରୋହ ଆରମ୍ଭ ହେବା ମାତ୍ରେ ବିଦ୍ରୋହୀମାନେ ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ବାଣପୁର ଆଡୁ ଗଲେ ଓ ପାଞ୍ଚଗଡ଼ରେ ପହଞ୍ଚି ସମ୍ବଲପୁର ରାଣୀଙ୍କ ପାଞ୍ଚଗଡ଼ ନିବାସ ଆକ୍ରମଣ କଲେ । ରାଣୀ ଖସି ପଳାଇଲେ: କିନ୍ତୁ ବିଦ୍ରୋହୀମାନଙ୍କ ହାତରେ ଦେବାନ ପଡ଼ିଲେ । ସେମାନେ ସଦାଶିବ ରାୟଙ୍କୁ ହତ୍ୟା କଲେ । ପର୍ଶୁରାମ ରାଉତରାୟ ଏହି ହତ୍ୟାକାଣ୍ଡ ଘଟାଇଥିଲେ ।

**ଗଙ୍ଗପଡ଼ା ଘାଟି ସ୍ଥାପନ** – ଖୋରଧା ସହର ବିଦ୍ରୋହୀଙ୍କ ନିୟନ୍ତ୍ରଣରେ ଥିଲା । ଏହାର ଉତ୍ତରରେ ଗଙ୍ଗପଡ଼ା ଅବସ୍ଥିତ । ଏହି ବାଟ ଦେଇ କଟକରୁ ବ୍ରିଟିଶ ସୈନ୍ୟ ଦଳ ଆସିବେ ବୋଲି ବିଦ୍ରୋହୀମାନେ ଅନୁମାନ କଲେ । ସେହି ଇଂରେଜ ସୈନ୍ୟ ଦଳଙ୍କ ଆସିବାରେ ବାଧା ଦେବାପାଇଁ ଜଗବନ୍ଧୁ ପାଇକ ଦଳ ସେଠାରେ ରଖିଲେ । ସେମାନେ କାଠ, ପଥର, ଡିମା ପ୍ରଭୃତି ପକାଇ ରାସ୍ତା ଅବରୋଧ କଲେ । ଇଂରେଜ ସୈନ୍ୟଙ୍କ ଗତିବିଧି ଜାଣିବାପାଇଁ ରାସ୍ତା କଡ଼ ଜଙ୍ଗଲରେ ପାଇକମାନେ ଲୁଚି ରହିଲେ ।

**ସରକାରଙ୍କ ବିଦ୍ରୋହ ମୁକାବିଲା ବ୍ୟବସ୍ଥା** – ବାଣପୁର, ଖୋରଧା ପ୍ରଭୃତି ଅଞ୍ଚଳରେ ବିଦ୍ରୋହୀମାନଙ୍କର ଅଗ୍ରଗତିର ସମ୍ବାଦ କଟକରେ ପହଞ୍ଚିଲା । ଏହାକୁ ଦମନ କରିବାପାଇଁ ବ୍ୟବସ୍ଥା କରାଗଲା । କଟକର ମାଜିଷ୍ଟ୍ରେଟ୍ ଥିଲେ ଏଡ୍‌ୱାର୍ଡ଼ ଇମ୍ପେ । ସେ କଟକରୁ ଲେଫ୍‌ଟନାଣ୍ଟ ପ୍ରାଇଡଙ୍କ ନେତୃତ୍ୱରେ ଦଳେ ସୈନ୍ୟ ଖୋରଧାକୁ ଓ ଅନ୍ୟ ଦଳ ଲେଫଟନାଣ୍ଟ ଫେରିସ୍‌ଙ୍କ ନେତୃତ୍ୱରେ ପିପିଲିକୁ ପଠାଇଲା । କ୍ୟାପ୍‌ଟେନ୍ ଓ୍ୱାର୍ଲିଙ୍ଗଟନ୍‌ଙ୍କୁ ପୁରୀ ପଠାଗଲା ।

**ଫେରିସ୍‌ଙ୍କୁ ହତ୍ୟା** – ଆଦେଶ ଅନୁଯାୟୀ ଲେଫଟନାଣ୍ଟ ଫେରିସ୍ ୫୦ ଜଣିଆ ଗୋଟିଏ ସୈନ୍ୟ ଦଳ ଧରି ପିପିଲିରେ ପହଞ୍ଚିଲେ । କ୍ୟାପଟେନ୍ ଓ୍ୟାର୍ଲିଙ୍ଗଟନ କଟକରୁ ବାହାରି ବାଲକାଟି ରାସ୍ତା ଦେଇ ପିପିଲିରେ ପହଞ୍ଚିଲେ । ତାଙ୍କ ଦଳ ଫେରିସ୍‌ଙ୍କ ସୈନ୍ୟ ଦଳ ସହ ଡେଲାଙ୍ଗ ଗଲେ । ସେଠାର ଅବସ୍ଥା ଶାନ୍ତ ଥିବା ଦେଖି କ୍ୟାପ୍‌ଟେନ୍ ଫେରିସ୍ ଖୋରଧା ଆଡ଼େ ଅଗ୍ରସର ହୋଇ ଲେଫଟନାଣ୍ଟ ପ୍ରାଇଡ୍‌ଙ୍କ ସଙ୍ଗେ ମିଶିବାପାଇଁ ନିର୍ଦ୍ଦେଶ ଦେଲେ । ନିର୍ଦ୍ଦେଶ ଅନୁଯାୟୀ ଫେରିସ୍ ୫୦ ଜଣ ସୈନ୍ୟ ସହ ଖୋରଧାଙ୍କ ଆଡ଼କୁ ଅଗ୍ରସର ହେଲେ ଓ ଅପ୍ରେଲ ୨ ତାରିଖ ପୂର୍ବରୁ ଗଙ୍ଗପଡ଼ାଠାରେ ପହଞ୍ଚିଲେ । ଗଙ୍ଗପଡ଼ାଠାରେ ପାଇକମାନେ ଘାଟି କରି ରହିଥିଲେ । ଫେରିସ୍ ଏହି ଘାଟି ଉପରେ ଆକ୍ରମଣ କଲେ । ବିଶାଳ ପାଇକ ବାହିନୀ ମଧ୍ୟ ପାଲଟା ଆକ୍ରମଣ କଲେ । ପାଇକ ସୈନ୍ୟଙ୍କ ସଂଖ୍ୟା ବେଶି ଥିବାରୁ ଫେରିସ୍

ସାହାଯ୍ୟପାଇଁ ଲେଫଟନାଣ୍ଟ ପ୍ରାଇଡ୍‌ଙ୍କ ପାଖକୁ ଦୁଇ ଜଣ ହରକରାଙ୍କୁ ଖୋରଧା ପଠାଇଲେ । ଏହି ଦୁଇ ଜଣ ହରକରା ପାଇକବାହିନୀ ହାତରେ ପଡ଼ିଗଲେ । ସେମାନେ ଏହି ଦୁହିଁଙ୍କର ନାକ କାଟି ଦେଲେ । ସେମାନଙ୍କ ଉପରେ ମଧ୍ୟ ଅତ୍ୟାଚାର କଲେ । ପ୍ରାଇଡ୍ ଆସି ଗଙ୍ଗପଡ଼ାରେ ପହଞ୍ଚିଲେ ଓ ଫେରିସ୍‌ଙ୍କ ସୈନ୍ୟ ଦଳ ମିଶି ପାଇକବାହିନୀ ଉପରେ ଆକ୍ରମଣ କଲେ । ପାଇକମାନେ ମଧ୍ୟ ସେମାନଙ୍କ ଉପରେ ପାଲଟା ଆକ୍ରମଣ କରି ସେମାନଙ୍କ ଯୁଦ୍ଧ ସରଞ୍ଜାମ ଓ ଖାଦ୍ୟସାମଗ୍ରୀ ଛଡ଼ାଇନେଲେ । ଫେରିସ୍ ପାଇକ ବାହିନୀକୁ ଗଙ୍ଗପଡ଼ାଠାରେ ହଟାଇ ପାରିଲେ ନାହିଁ । ବରଂ ପାଇକମାନଙ୍କ ଗୁଳିରେ ପ୍ରାଣ ହରାଇଲେ । ତାଙ୍କ ସାଙ୍ଗରେ ଥିବା ଅଣସୁବାଦାର ମଧ୍ୟ ନିହତ ହେଲେ । ପ୍ରାଇଡ୍ କିନ୍ତୁ ଖୋରଧା ତ୍ୟାଗ କରି ପିପିଲି ବାଟଦେଇ କଟକ ପଳାଇଲେ ।

ବିଦ୍ରୋହ ଅବସ୍ଥା ଅନୁଧ୍ୟାନପାଇଁ କଟକର ମାଜିଷ୍ଟ୍ରେଟ ଇମ୍ପେ ୧୮୧୭ ଅପ୍ରେଲ ମାସ ୧ ତାରିଖରେ ବ୍ରିଟିଶ ଅଷ୍ଟାଦଶ ବେଙ୍ଗଲ ନେଟିଭ ପଦାତିକ ବାହିନୀ କମାଣ୍ଡରେ ଥିବା ଲେଫଟନାଣ୍ଟ ଟ୍ରାଭିସ୍‌ଙ୍କୁ ଧରି ଖୋରଧା ଅଭିମୁଖେ ଯାତ୍ରା କଲେ । ସୈନ୍ୟବାହିନୀରେ ୬୪ ଜଣ ସିପାହୀ ଥିଲେ । ସେ ଅପ୍ରେଲ ମାସ ୨ ତାରିଖରେ ଖୋରଧାରୁ ୮ ମାଇଲ ଦୂରରେ ଥିବା ଗଙ୍ଗପଡ଼ା ଗ୍ରାମରେ ପହଞ୍ଚିଲେ । ସଂଗ୍ରାମୀମାନେ ଇଂରେଜ ସୈନ୍ୟ ଦଳ ଉପରେ ଗୁଳି ଚାଳନା କଲେ । ଇଂରେଜମାନେ ଆଉ ଅଗ୍ରସର ହେବା ସହଜ ହେବ ନାହିଁ ଭାବି ରାତିଟି ସେଠାରେ କଟାଇବାକୁ ସ୍ଥିର କରି ଛାଉଣୀ ପକାଇ ରହିଲେ । ଗଙ୍ଗପଡ଼ାଠାରେ ଇମ୍ପେ ଖବର ପାଇଲେ ଯେ ଲେଫଟନାଣ୍ଟ ପ୍ରାଇଡ୍ ଖୋରଧାରେ ନାହାନ୍ତି । ବକ୍ସି ଜଗବନ୍ଧୁ ମଧ୍ୟ ୫୦୦ ସୈନ୍ୟ ଧରି ପ୍ରାଇଡ୍‌ଙ୍କୁ ଆକ୍ରମଣ କରିବାକୁ ପାଞ୍ଚଗଡ଼ରୁ ଖୋରଧା ଆଡ଼କୁ ଅଗ୍ରସର ହେଉଥିବା ଖବରପାଇ ଭୀତତ୍ରସ୍ତ ହୋଇପଡ଼ିଲେ । ଗଙ୍ଗପଡ଼ାଠାରେ ପାଇକମାନଙ୍କ ଅବରୋଧ ଭାଙ୍ଗି ଖୋରଧା ଆଡ଼କୁ ଯିବା ମଧ୍ୟ ସମ୍ଭବ ନ ଥିଲା । ସେତେବେଳକୁ ବିଦ୍ରୋହୀଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇ ୩୦୦୦ ହୋଇଯାଇଥିଲା । ଇଂରେଜ ସୈନ୍ୟମାନେ ରାସ୍ତାଘାଟ ସହିତ ପରିଚିତ ନ ଥିଲେ । ସେମାନେ ପ୍ରାୟ ଖୋଲା ଜାଗାରେ ରହି ଆଗଉଥିଲେ । କିନ୍ତୁ ପାଇକମାନେ ବଣ-ଜଙ୍ଗଲ ମଧ୍ୟରେ ରହି ଇଂରେଜ ସୈନ୍ୟମାନଙ୍କ ଉପରେ ଗୁଳିବର୍ଷଣ କରୁଥିଲେ । ଇମ୍ପେ ମଧ୍ୟ ଦୁଇ ଦିନ ଭିତରେ ଖୋରଧାରେ ପହଞ୍ଚିଯିବେ ବୋଲି ଭାବିଥିଲେ । ତେଣୁ ସେ କଟକରୁ ବେଶି ରସଦ ସାଙ୍ଗରେ ଆଣି ନ ଥିଲେ । ସେ ସମୟରେ ଗଙ୍ଗପଡ଼ା କିମ୍ବା ଆଖପାଖ ଅଞ୍ଚଳରୁ ରସଦ ସଂଗ୍ରହ କରିବା ସମ୍ଭବପର ନ ଥିଲା । ଇଂରେଜ ସୈନ୍ୟମାନେ ମଧ୍ୟ ଘନ ଘନ

ଗୁଳିଚାଳନା ଯୋଗୁଁ ସାଙ୍ଗରେ ଆଣିଥିବା ଖାଦ୍ୟ ଓ ଯୁଦ୍ଧସାମଗ୍ରୀ ନେଇପାରିଲେ ନାହିଁ । ବହୁ ଜିନିଷ ବାଟରେ ଛାଡ଼ିଯିବାକୁ ବାଧ ହେଲେ । ଏତେ ଅସୁବିଧା ହେଲେ ବି ଲେଫଟନାଣ୍ଟ ଟ୍ରାଭିସ୍ ସୈନ୍ୟ ଦଳକୁ ଖୁବ୍ ଦକ୍ଷତାର ସହିତ ଚଳାଇ ଉପରବେଳା ସାଢ଼େ ତିନିଟା ବେଳେ ଭୁବନେଶ୍ୱର ନିକଟସ୍ଥ ବାଲକାଟି ଗ୍ରାମରେ ପହଞ୍ଚିଲେ । ବାଲକାଟିରେ ପ୍ରାୟ ଛଅ ଘଣ୍ଟା ବିଶ୍ରାମ ନେଲା ପରେ ଇମ୍ପେ କଟକ ଅଭିମୁଖେ ବାହାରିଲେ । ସାଙ୍ଗେ ସାଙ୍ଗେ ବିଦ୍ରୋହୀମାନେ ଇମ୍ପେଙ୍କ ସୈନ୍ୟଦଳ ଉପରେ ଅନ୍ଧାର ରାତ୍ରିରେ ଆକ୍ରମଣ କଲେ; ମାତ୍ର ସରକାର ତୋପ ମାଡ଼ କରିବାରୁ ବିଦ୍ରୋହୀମାନେ ଛତ୍ରଭଙ୍ଗ ଦେଲେ । ଇମ୍ପେ କଟକରେ ଅପ୍ରେଲ ମାସ ୪ ତାରିଖରେ ପହଞ୍ଚିଲେ । ସେ କଟକରେ ସରକାରଙ୍କୁ ଅବସ୍ଥା ଜଣାଇଦେଲେ – ''ଏତିକି ମାତ୍ର ମୁଁ ଗଭର୍ଣ୍ଣରଙ୍କୁ ଜଣାଉଛି ଯେ ମୋର ପଶ୍ଚାତ୍‌ପଦ ବାଧ୍ୟବାଧକତା ଯୋଗୁଁ ହେଲା । ସମଗ୍ର ଖୋରଧା ରାଜ୍ୟରେ ମେଳି ଅବସ୍ଥା ରହିଛି ।''

**ରାଜାଙ୍କ ନାମ ବ୍ୟବହାର –** ସେତେବେଳକୁ ସଂଗ୍ରାମୀ ପାଇକମାନେ ପୁରୀରେ ଅବସ୍ଥାନ କରୁଥିବା ଖୋରଧା ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ନାମ ବ୍ୟବହାର କରୁଥିଲେ । ରାଜାଙ୍କୁ ଖୋରଧା ନେଇ ସିଂହାସନରେ ବସାଇବା ତାଙ୍କର ଲକ୍ଷ୍ୟ ବୋଲି ବିଦ୍ରୋହୀମାନେ ଘୋଷଣା କରିସାରିଥିଲେ । ବସ୍ତୁତଃ, ଜଗବନ୍ଧୁ ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ନାମରେ ଫଁଦୁଆ ଜାରି କରି ସଂଗ୍ରାମ ଚଳାଇଥିଲେ । ଇମ୍ପେ ତେଣୁ ସରକାରଙ୍କୁ ଜଣାଇଲେ ଯେ ରାଜାଙ୍କୁ ଅବିଳମ୍ବେ ପୁରୀରୁ ଆଣି କଟକରେ ରଖାଯାଉ । ପ୍ରତ୍ୟେକ ପାଇକ ସରଦାରମାନଙ୍କୁ ଧରାଇଦେଲେ ୫୦୦୦ ଟଙ୍କା ପୁରସ୍କାର ଦିଆଯିବାକୁ ଓ ଉପଦ୍ରୁତ ଅଞ୍ଚଳରେ ସାମରିକ ଶାସନ ଜାରି କରିବାକୁ ମଧ ପ୍ରସ୍ତାବ ଦେଲେ ।

**ୱାର୍ଲିଙ୍ଗଟନ ପୁରୀରେ –** କଟକରୁ କ୍ୟାପଟେନ୍ ୱାର୍ଲିଙ୍ଗଟନ୍ ସେନାଧକ୍ଷମାନଙ୍କ ସହ ପୁରୀ ଯାତ୍ରା କଲେ । ବାଲକାଟି, ପିପିଲି, ଡେଲାଙ୍ଗ ବାଟେ ଅଗ୍ରସର ହେଉଥିଲାବେଳେ କୌଣସି ପ୍ରତିରୋଧର ସମ୍ମୁଖୀନ ହୋଇ ନ ଥିଲେ । ଅପ୍ରେଲ ମାସ ୨ ତାରିଖରେ ସେ ପୁରୀରେ ପହଞ୍ଚିଲେ । ପୁରୀରେ ଅବସ୍ଥା ଶାନ୍ତ ଥିଲା । କିନ୍ତୁ କାଳେ ଜଗବନ୍ଧୁ ପୁରୀ ଆକ୍ରମଣ କରିପାରନ୍ତି ଏହି ଆଶଙ୍କାରେ ସେ ଏକ ଶକ୍ତିଶାଳୀ ସୈନ୍ୟ ଦଳ ପୁରୀ ଅଞ୍ଚଳକୁ ପଠାଇବାକୁ କଟକର ମୁଖ୍ୟ ସେନାଧକ୍ଷଙ୍କୁ ଜଣାଇଲେ ।

ଏଥି ମଧରେ ଖୋରଧା ପାଇକମାନଙ୍କର ସଂଗ୍ରାମର କେନ୍ଦ୍ରସ୍ଥଳୀ ହୋଇଥିଲା । ବ୍ରିଟିଶ ସେନାବାହିନୀ ଖୋରଧା, ପୁରୀ ପ୍ରଭୃତି ଅଞ୍ଚଳରୁ ପଳାୟନ କରିଥିବା ଖବର ସବୁଆଡ଼େ ବ୍ୟାପିଯାଇଥିଲା । ଫଳରେ ପାଇକମାନଙ୍କ ମଧରେ ଅଭୂତପୂର୍ବ ଉନ୍ମାଦନା

ସୃଷ୍ଟି ହେଲା । ସେମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇ ଇଂରେଜ ଶାସନର ସମର୍ଥକମାନଙ୍କୁ ଆକ୍ରମଣ କରିବାକୁ ବାହାରିଲେ । ଗୋଟିଏ ଦଳ ଲେମ୍ବାଇ ପ୍ରଗଣା ଗଲେ । ପାଇକମାନଙ୍କର ନେତୃତ୍ୱ ନେଇଥିଲେ ସରଦାର ଗୋପାଳ ଛୋଟରାୟ । ଲେମ୍ବାଇ ପ୍ରଗଣାର ରଥୀପୁର ଗ୍ରାମରେ ଚରଣ ପଟ୍ଟନାୟକ ରହୁଥିଲେ । ସେ ଜଗବନ୍ଧୁଙ୍କର ଶତ୍ରୁ ଥିଲେ । ବକ୍‌ସିଙ୍କର ମରହଟ୍ଟାମାନଙ୍କ ସହିତ ଗୁପ୍ତ ସମ୍ପର୍କ ଥିବା କଥା; ଖୋରଧା ପୋଲିସ ଦାରୋଗାଙ୍କୁ ଜଣାଇ ଦେଇଥିଲେ । ସେଥିପାଇଁ ବିଦ୍ରୋହୀମାନଙ୍କର ତାଙ୍କ ଉପରେ ରାଗ ଥିଲା । ଘୋଡ଼ସବାର ସଚ୍ଚିଦାନନ୍ଦ ପଟ୍ଟନାୟକ ରଥୀପୁର ଗ୍ରାମରେ ପହଞ୍ଚି ଚରଣ ପଟ୍ଟନାୟକଙ୍କୁ ହତ୍ୟା କଲେ । ଏହା ଅଶୋକାଷ୍ଟମୀ ପରଦିନ ଘଟଣା । ତାଙ୍କୁ ହତ୍ୟା କରାଯିବାବେଳେ କେହି ଜଣେ ହେଲେ ଗ୍ରାମବାସୀ ଚରଣ ପଟ୍ଟନାୟକଙ୍କୁ ରକ୍ଷା କରିବାକୁ ବାହାରି ନ ଥିଲେ ।

**ପିପିଲି ଆକ୍ରମଣ** – ଲେମ୍ବାଇକୁ ଯାଇଥିବା ବିଦ୍ରୋହୀ ପାଇକମାନେ ପିପିଲି ଗଲେ । ସେଠାରେ ପହଞ୍ଚି ଥାନାରେ ଅଗ୍ନିସଂଯୋଗ କଲେ । ସରକାରୀ ଅଫିସଗୁଡ଼ିକ ଲୁଟ କଲେ । ପିପିଲି ବିଦ୍ରୋହୀ ପାଇକମାନଙ୍କ ହାତରେ ପଡ଼ିଲା । ୧୮୧୭ ଅପ୍ରେଲ ମାସ ୭ ତାରିଖରେ ଗଡ଼ପଦ୍ମପୁର ଗଡ଼ନାୟକ ରାଜବଲ୍ଲଭ ଛୋଟରାୟ ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ୩୦୦ ପାଇକଙ୍କୁ ଧରି ପିପିଲିଠାରେ ରୁଣ୍ଡ ହୋଇଥିବା ପାଇକବାହିନୀ ସହିତ ଯୋଗ ଦେଲେ ।

**କୋଠଦେଶ ଆକ୍ରମଣ** – ପିପିଲିରୁ ପାଇକ ବାହିନୀ କୋଠଦେଶ (ନିମାପଡ଼ା) ଆଡ଼କୁ ଅଗ୍ରସର ହେଲେ । କୋଠଦେଶର ତହସିଲଦାର ତାଙ୍କ ପ୍ରତିନିଧି ଓ ପିଅନଙ୍କୁ ରାଜସ୍ୱ ଆଦାୟପାଇଁ ପଠାଇଥିଲେ । ସେମାନେ ହରିହରପୁର ଗ୍ରାମରେ ରାଜସ୍ୱ ଆଦାୟ କରୁଥିବା ସମୟରେ ଆକ୍ରମଣକାରୀ ପାଇକମାନଙ୍କ ହାତରେ ପଡ଼ିଲେ । ପାଇକମାନେ ସେମାନଙ୍କୁ ନିସ୍ତୁକ ମାଡ଼ ମାରିଲେ । ରାଜସ୍ୱ ଆଦାୟ କାଗଜପତ୍ର ମଧ୍ୟ ଚିରି ଦେଲେ । ସରକାରଙ୍କୁ ସମର୍ଥନ କରୁଥିବା ଦଶ ବାରଟି ପରିବାରଙ୍କ ଘର ଲୁଟ କଲେ । ସେଠା ପୁଲିସ ଦାରୋଗାଙ୍କ ଘର ଉପରେ ମଧ୍ୟ ଆକ୍ରମଣ ହେଲା । ସେ ପଳାଇଯାଇ ଲୁଚିଲେ । ବହୁ ସମୟ ଧରି ତାଙ୍କୁ ଖୋଜାଖୋଜି କଲେ । ତାଙ୍କୁ ନ ପାଇ ତାଙ୍କ କକାଙ୍କୁ ଅଟକ ରଖିଲେ । ବନ୍ଧ ଦାରୋଗା ଓ ଅଫିସ କର୍ମଚାରୀଙ୍କ ଉପରେ ମଧ୍ୟ ପାଇକମାନେ ଆକ୍ରମଣ କଲେ । ଜଗବନ୍ଧୁଙ୍କ ପ୍ରରୋଚନାରେ ସରବରାକାର ଓ ଜମିଦାରମାନେ ରାଜସ୍ୱ ଦେବା ବନ୍ଦ କଲେ ।

ବିଦ୍ରୋହ କ୍ରମେ ଚାରିଆଡ଼କୁ ବ୍ୟାପିଲା । ଏହାର ସୁଯୋଗ ନେଲେ ପୂର୍ବତନ ଜମିଦାରମାନେ – ଯେଉଁମାନଙ୍କ ଜମିଦାରୀକୁ ଅନ୍ୟମାନେ କିଣି ନେଇଥିଲେ ।

ଉକ୍ତ ପାଇକମାନଙ୍କ ସାହାଯ୍ୟରେ ବଳରାମପୁର ଏବଂ ବୁଢ଼ାଖେରା ଜମିଦାରୀକୁ ଅବୈଧ ଉପାୟରେ ଖର୍ଦ୍ଦି କରିଥିବା ଅଣଓଡ଼ିଆ ଜମିଦାରଙ୍କୁ ଆକ୍ରମଣ କରି ସେଠାରୁ ଘଉଡ଼ାଇ ଦେଲେ । ସେମାନଙ୍କୁ ତାଙ୍କ ପୂର୍ବ ଜମିଦାରୀ ଫେରାଇ ଦିଆଗଲା ।

ଲେମ୍ବାଇ, ପିପିଲି ଓ କୋଠଦେଶର ସାଧାରଣ ଲୋକେ ବହୁସଂଖ୍ୟାରେ ଏହି ବିଦ୍ରୋହରେ ଯୋଗ ଦେଲେ । ଇଂରେଜ ଶାସନକୁ ସମର୍ଥନ କରୁଥିବା ବ୍ୟକ୍ତିମାନଙ୍କୁ ହତ୍ୟା କରାଗଲା । ସେମାନଙ୍କ ଗ୍ରାମମାନଙ୍କୁ ପୋଡ଼ି ଦିଆଗଲା । ଫସଲ ମଧ୍ୟ ନଷ୍ଟ କରିଦିଆଗଲା । ଜଗବନ୍ଧୁ ମଧ୍ୟ ଚାରିଆଡ଼କୁ ଲୋକ ପଠାଇ ଇଂରେଜ ବିରୋଧୀ ଅଭିଯାନ ସଫଳ ହେଉଥିବା କଥା ଜଣାଇଦେଲେ ।

**ଗୋପ, ଗୋଲରା ଓ କୁଜଙ୍ଗ ବିଦ୍ରୋହ –** ଜଗବନ୍ଧୁଙ୍କ ଦୁଇ ଜଣ ଅନୁଗାମୀ ଗଡ଼ନାୟକଙ୍କ ନେତୃତ୍ୱରେ ୫୦୦ରୁ ଊର୍ଦ୍ଧ୍ୱ ପାଇକ ଖୋରଧାରୁ ରୁପ୍‌ସାଗଡ଼କୁ ଗଲେ । ସେଠାରୁ ସେମାନେ ଗୋପ ଓ କୁଜଙ୍ଗ ଗଲେ ଓ ସେସବୁ ସ୍ଥାନରେ ଇଂରେଜମାନଙ୍କୁ ଆକ୍ରମଣ କରିବାକୁ ମତାଇଲେ । ମରିଚପୁର, ହରିଶପୁର ଓ ଗୋଲରାର ପୂର୍ବତନ ଜମିଦାରମାନେ ଏହି ବିଦ୍ରୋହରେ ଯୋଗ ଦେଲେ । ପାଇକମାନେ କିଲା ରୁପ୍‌ସାର ନୂତନ ଜମିଦାରଙ୍କ କଚେରିଘର ଓ ତାଳପଦା ଜମିଦାରଙ୍କ କଚେରି ଓ ଅଫିସ ଗୃହକୁ ଆକ୍ରମଣ କଲେ । ସେହି ଜମିଦାରୀକୁ କିଣିଥିବା ଜମିଦାରମାନଙ୍କୁ ବେଦଖଲ କଲେ । ସେମାନଙ୍କ ଘର ଲୁଣ୍ଠନ ମଧ୍ୟ କଲେ । ଅସୁରେଶ୍ୱର ଓ ପ୍ରହରାଜପୁରରେ ସରକାରୀ ଅଫିସ ଉପରେ ବିଦ୍ରୋହୀମାନେ ଆକ୍ରମଣ କରି ପୋଡ଼ି ପକାଇଲେ ।

**ଲୁଣ ଗୋଲା ଉପରେ ଚଢ଼ାଉ –** ବ୍ରିଟିଶ ସରକାରଙ୍କ ଏକଚାଟିଆ ଲୁଣ ବ୍ୟବସାୟ ଫଳରେ ଲୁଣ ଉତ୍ପାଦନକାରୀମାନେ କ୍ଷତିଗ୍ରସ୍ତ ହୋଇଥିବା ପୂର୍ବରୁ ବର୍ଣ୍ଣିତ । ସେହି ଲୁଣ ଉତ୍ପାଦନକାରୀ ଅର୍ଥାତ୍ ମଲାଙ୍ଗୀମାନେ ବିଦ୍ରୋହୀମାନଙ୍କ ସହ ହାତ ମିଳାଇଲେ । ସେମାନେ ଅଣଓଡ଼ିଆ ଲୁଣ କର୍ମଚାରୀମାନଙ୍କ ଉପରେ ଆକ୍ରମଣ କଲେ । ରେଣ୍ଟା ଲୁଣ ଗୋଦାମ ଉପରେ ଚଢ଼ାଉ ହେଲା । ଗୋଦାମ ଦାରୋଗା ସେଥିରେ ବାଧା ଦେବାରୁ ତାଙ୍କୁ ଓ ତାଙ୍କର ଚାକରମାନଙ୍କୁ ବିଦ୍ରୋହୀମାନେ ଧରି ନେଇ ଅଟକ କରି ରଖିଲେ । ସେମାନେ ଲୁଣ ଗୋଦାମରୁ ଲୁଣ ଲୁଟି ନେଲେ ଓ ତାହାକୁ ଲୋକଙ୍କ ମଧ୍ୟରେ ବାଣ୍ଟିଲେ । ଅସ୍ତରଙ୍ଗ ଓ ବକ୍କୁଦରେ ଲୁଣ ଗୋଲାମାନ ଥିଲା । ସେହି ଗୋଲାମାନଙ୍କରୁ ଲୁଣ ବାହାରକୁ ପଠାଯାଇ ବିକ୍ରି କରାଯାଉଥିଲା । ସ୍ଥାନୀୟ ଲୋକେ ଲୁଣ ପାଇବାରୁ ବଞ୍ଚିତ ହେଉଥିଲେ ବା ଚଢ଼ା ଦରରେ କିଣିବାକୁ ବାଧ ହେଉଥିଲେ । ତାହା ମଧ୍ୟ ସୁବିଧାରେ ମିଳୁ ନ ଥିଲା । ଲୋକମାନଙ୍କୁ ଦୂରଦୂରାନ୍ତକୁ ଲୁଣ କିଣିବାକୁ ପଡୁଥିଲା । ଫଳରେ ଲୋକେ ଘୋର ଅସନ୍ତୁଷ୍ଟ ଥିଲେ । ସେଠା

ଗୋଲା ଉପରେ ବିଦ୍ରୋହୀମାନେ ଚଢ଼ାଉ କଲେ । ଲୁଣ ଦାରୋଗା ଓ ଅନ୍ୟାନ୍ୟ କର୍ମଚାରୀଙ୍କୁ ଅଟକ ରଖିଲେ । ବିଦ୍ରୋହୀମାନେ ସେଠାରୁ ପୁରୋହ ଗଲେ । ସେଠା ଜମିଦାରଙ୍କ କଚେରି ଘର ଲୁଣ୍ଠନ କଲେ ।

**କୁଜଙ୍ଗ ଆକ୍ରମଣ** – କୁଜଙ୍ଗ ରାଜା ବୀରଭଦ୍ର କ୍ଷେଣ୍ଣ ଇଂରେଜମାନଙ୍କ ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିଲେ । ୧୮୦୪ ଖ୍ରୀ. ଅକ୍ଟୋବର ମାସରେ ବୀରଭଦ୍ର ତାଙ୍କ ଦେଓ୍ୱାନଙ୍କଦ୍ୱାରା ନିହତ ହେଲେ । ଏଥିରେ ରାଜାଙ୍କ ସାନଭାଇ ଚନ୍ଦ୍ରଧ୍ୱଜ କ୍ଷେଣ୍ଣ ସମ୍ପୃକ୍ତ ଥିଲେ । ଏହାପରେ ଚନ୍ଦ୍ରଧ୍ୱଜ ଅନ୍ୟ ବଡ଼ଭାଇ ମଧୁସୂଦନ କ୍ଷେଣ୍ଣଙ୍କୁ ବନ୍ଦୀ କରି କୁଜଙ୍ଗର ରାଜା ହେଲେ । ଇଂରେଜ ସରକାର ମଧ୍ୟ ଚନ୍ଦ୍ରଧ୍ୱଜଙ୍କୁ ରାଜା ବୋଲି ସ୍ୱୀକାର କଲେ । କିନ୍ତୁ ଏହା ଏକ ସୁପରିକଳ୍ପିତ ଷଡ଼୍ଯନ୍ତ୍ର ବୋଲି ପରେ ଜଣାପଡ଼ିଲା । କର୍ଣ୍ଣେଲ ହାରକୋର୍ଟ ୧୮୦୫ ମସିହା ଫେବୃୟାରୀ ମାସରେ କୁଜଙ୍ଗ ଗଲେ । ଚନ୍ଦ୍ରଧ୍ୱଜ ହାରକୋର୍ଟଙ୍କୁ ସାକ୍ଷାତ୍ ନ କରି ପଳାୟନ କଲେ । ହାରକୋର୍ଟ ପାରାଦ୍ୱୀପରେ ବନ୍ଦୀ ହୋଇ ରହିଥିବା ମଧୁସୂଦନଙ୍କୁ ଖଲାସ କଲେ ଓ ତାଙ୍କୁ କୁଜଙ୍ଗର ରାଜା କଲେ । ହାରକୋର୍ଟ କୁଜଙ୍ଗରୁ ଫେରିବା ପରେ ଚନ୍ଦ୍ରଧ୍ୱଜ ପୁଣି ବିଦ୍ରୋହ କରି ମଧୁସୂଦନ କ୍ଷେଣ୍ଣଙ୍କୁ ବନ୍ଦୀ କଲେ । ହାରକୋର୍ଟ ପୁଣି କୁଜଙ୍ଗ ଗଲେ ଓ ମଧୁସୂଦନଙ୍କୁ ଖଲାସ କରି କୁଜଙ୍ଗର ରାଜା କଲେ । ଚନ୍ଦ୍ରଧ୍ୱଜ ଓ ତାଙ୍କର ଦୁଇ ସହଯୋଗୀ ନାରାୟଣ ପରମଗୁରୁ ଓ ବାମଦେବ ପାଟ୍ଟଯୋଶୀଙ୍କର ବିଚାର ହେଲା । ସେମାନେ ତିନି ବର୍ଷ କାରାଦଣ୍ଡରେ ଦଣ୍ଡିତ ହେଲେ ।

୧୮୧୫ ସଂଗ୍ରାମ ବେଳକୁ ଚନ୍ଦ୍ରଧ୍ୱଜ ଓ ତାଙ୍କର ଦୁଇ ସହଯୋଗୀ ମୁକ୍ତି ପାଇଥିଲେ । ସେମାନେ ବକ୍‌ସି ଜଗବନ୍ଧୁଙ୍କ ସହିତ ସମ୍ପର୍କ ସ୍ଥାପନ କରି କୁଜଙ୍ଗରେ ଇଂରେଜ ବିରୋଧୀ ସଂଗ୍ରାମରେ ଯୋଗ କଲେ । ପରମଗୁରୁ କୁଜଙ୍ଗ ରାଜବଂଶର ପଦସ୍ଥ କର୍ମଚାରୀ ଥିଲେ । କୁଜଙ୍ଗର ପାଇକ ଓ ଖଣ୍ଡାୟତମାନେ ସେମାନଙ୍କୁ ସମର୍ଥନ କରୁଥିଲେ । କୁଜଙ୍ଗର ରାଜା ମଧୁସୂଦନ କ୍ଷେଣ୍ଣ ମଧ୍ୟ ନିଜର ଗାଦି ସୁରକ୍ଷାପାଇଁ ବିଦ୍ରୋହୀଙ୍କ ସହ ଯୋଗ ଦେଲେ ।

ଖୋରଧାରେ ସାମରିକ ଶାସନ ଜାରି ହେବା ପରେ ବହୁସଂଖ୍ୟକ ଖୋରଧା ପାଇକ ଗୋପ ଅଞ୍ଚଳକୁ ପଳାଇ ଆସିଥିଲେ । ସେମାନେ କୁଜଙ୍ଗ ଅଞ୍ଚଳର ପାଇକମାନଙ୍କ ସଙ୍ଗେ ମିଶି କୁଜଙ୍ଗ ଅଞ୍ଚଳରେ ଆକ୍ରମଣ ଆରମ୍ଭ କରିଦେଲେ । ବର୍ଷା ଋତୁ ଆସିଯାଇଥିବାରୁ ଇଂରେଜ ସୈନ୍ୟମାନେ ଏ ଅଞ୍ଚଳକୁ ଆସି ବିଦ୍ରୋହୀମାନଙ୍କର ମୁକାବିଲା କରିବା କଷ୍ଟସାଧ୍ୟ ଥିଲା । ଏହାର ସୁଯୋଗ ନେଇ ତିରୁନ, ହରିହରପୁର, ଅସୁରେଶ୍ୱର, ପ୍ରହରାଜପୁର ଓ ପଟ୍ଟାମୁଣ୍ଡାଇ ଥାନା ପ୍ରଭୃତିକୁ ବିଦ୍ରୋହୀମାନେ ଆକ୍ରମଣ

କଲେ । ୨୦୦ ପାଇକ ପଚ୍ଛାମୁଣ୍ଡାଇ ଯାଇ ଥାନା ଆକ୍ରମଣ କଲେ । ଚାରି ଜଣ ବନ୍ଧୁକଧାରୀ ପ୍ରହରୀଙ୍କୁ ମାଡ଼ ମାରି ଲହୁଲୁହାଣ କରିଦେଲେ । ସେମାନେ ପାଇକମାନଙ୍କ ପାଖରେ ଆତ୍ମସମର୍ପଣ କଲେ ।

ପାଇକମାନେ ଏଥି ମଧ୍ୟରେ ଖବର ପାଇଲେ ଯେ ରାମପ୍ରସାଦ ନାମକ ଜଣେ ସରକାରୀ ଲୁଣ ଏଜେଣ୍ଟ କୁଜଙ୍ଗରୁ ସବୁ ଲୁଣ ନେଇ ଲୁଣଗୋଲା ଓ ସରକାରୀ କଚେରିରେ ଠୁଳ କରି ରଖିଛନ୍ତି । କୁଜଙ୍ଗ ରାଜାଙ୍କ ନିର୍ଦ୍ଦେଶରେ ବହୁ ପାଇକ ଉକ୍ତ ସ୍ଥାନରେ ପହଞ୍ଚି ଲୁଣ କର୍ମଚାରୀମାନଙ୍କୁ ବାନ୍ଧି ପକାଇଲେ । ସେମାନଙ୍କୁ ନେଇ ପାରାଦ୍ୱୀପ କ୍ୟାମ୍ପରେ ଅଟକ ରଖିଲେ । ଲୁଣ ଗୋଲା ଓ ସରକାରୀ କଚେରିରେ ରଖା ଯାଇଥିବା ଲୁଣକୁ ଲୁଟି ନେଲେ । ରାମପ୍ରସାଦଙ୍କୁ ବାନ୍ଧିନେଇ ପାରାଦ୍ୱୀପ କ୍ୟାମ୍ପ୍‌ରେ ରଖାଗଲା । ଆଠ ଜଣ ସରକାରୀ ସିପାହୀ ଉକ୍ତ କର୍ମଚାରୀମାନଙ୍କୁ ବିଦ୍ରୋହୀ ପାଇକମାନଙ୍କଠାରୁ ଛଡ଼ାଇ ନେବାକୁ ଚେଷ୍ଟା କରିଥିଲେ । ସେମାନଙ୍କୁ ମଧ୍ୟ କାବୁ କରାଯାଇ ପାରାଦ୍ୱୀପ କ୍ୟାମ୍ପରେ ରଖାଗଲା ।

**କଟକ ଆକ୍ରମଣ ଆଶଙ୍କା** – ଖୋରଧା, ପୁରୀ, କୁଜଙ୍ଗ, ପଚ୍ଛାମୁଣ୍ଡାଇ ପ୍ରଭୃତି ଅଞ୍ଚଳରେ ବ୍ରିଟିଶ ଶାସନ ପ୍ରାୟ ଲୋପ ପାଇଥିଲା । ଏହା ବ୍ରିଟିଶ ଅଫିସର୍‌ମାନଙ୍କୁ ଭୀତତ୍ରସ୍ତ କରିପକାଇଲା । ଇତି ମଧ୍ୟରେ ବିଦ୍ରୋହୀ ପାଇକମାନେ କଟକ ଆକ୍ରମଣ କରିବାକୁ ଯାଉଛନ୍ତି ବୋଲି ଖବର ମିଳିଲା । ସେମାନଙ୍କର ସମ୍ଭାବ୍ୟ ଆକ୍ରମଣରୁ ରକ୍ଷା ପାଇବାପାଇଁ ସତର୍କତାମୂଳକ ପଦକ୍ଷେପ ନିଆଗଲା । କଟକରେ ଅବସ୍ଥାପିତ ବ୍ରିଟିଶ କମାଣ୍ଡିଙ୍ଗ ଅଫିସର କର୍ଣ୍ଣେଲ ହାଲୋରାନ୍ ନିରାପଦପାଇଁ ଜିଲ୍ଲାପାଳଙ୍କ ତହବିଲକୁ ନୌକା ସାହାଯ୍ୟରେ ମହାନଦୀକୁ ଓ ଲୁଣ ଏଜେଣ୍ଟଙ୍କ ତହବିଲକୁ କାଠଯୋଡ଼ି ମଧ୍ୟକୁ ଉଠାଇ ନେବାପାଇଁ ଉଚିତ ମନେ କଲେ ।

ବିଦ୍ରୋହୀ ପାଇକମାନଙ୍କ ଆକ୍ରମଣ ଗୁରୁତର ଧାରଣ କଲା । ଏହା ସରକାରଙ୍କ ଘୋର ଭୟ ଓ ଉଦ୍‌ବେଗର କାରଣ ହୋଇପଡ଼ିଲା ।

**ବକ୍‌ସିଙ୍କ ପୁରୀ ଆକ୍ରମଣ** – ଜଗବନ୍ଧୁ ଦଳେ ପାଇକଙ୍କୁ ନେଇ ପୁରୀ ଗଲେ । ତାଙ୍କର ଦଳବଳ ଅପ୍ରେଲ ମାସ ୧୨ ତାରିଖରେ ପୁରୀ ସହରର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ସୁକଳ ଗ୍ରାମରେ ଏକାଠି ହେଲେ । ସେଠାରୁ ବାହାରି ସନ୍ଧ୍ୟା ସମୟରେ ଲୋକନାଥ ଘାଟି ବାଟେ ପୁରୀ ସହର ଭିତରେ ପ୍ରବେଶ କଲେ । ସେତେବେଳକୁ ସେମାନଙ୍କ ସଂଖ୍ୟା ୨୦୦୦ରୁ ଅଧିକ ହୋଇଯାଇଥିଲା । ସହରରେ ଘୋର ଚାଞ୍ଚଲ୍ୟ ଖେଳିଗଲା । ଇଂରେଜ ହାକିମମାନେ ନିଜ ନିଜ ଗୃହରେ ନ ରହି ଏକ ସ୍ଥାନରେ ରହିବାକୁ ସ୍ଥିର କଲେ । ସମୁଦ୍ର କୂଳରେ ଥିବା ଏକ ବଙ୍ଗଳାରେ ହାକିମାନେ ଆଶ୍ରୟ

ନେଲେ । ଲୁଣ ଏଜେଣ୍ଟ ବେଚରଙ୍କ ବଙ୍ଗଳାରେ ସରକାରୀ ସିପାହିମାନେ ରହିଲେ । ରାତି ୮ଟା ବେଳେ ଲୋକନାଥ ଘାଟରେ ଥିବା କଚେରି ପୋଡ଼ାଗଲା । ପୋଲିସ ଦାରୋଗାଙ୍କ ଘର ସହିତ ଅନ୍ୟ କେତେକ ସରକାରୀ ଘରେ ମଧ୍ୟ ଅଗ୍ନିସଂଯୋଗ କରାଗଲା । ବିଦ୍ରୋହୀମାନେ ସମୁଦ୍ର କୂଳରେ ଥିବା ଜଙ୍ଗଲରେ ରାତ୍ରି କଟାଇଲେ ।

୧୩ ତାରିଖ ସକାଳେ ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ୧୫୦ ଜଣ ବିଦ୍ରୋହୀ ପାଇକ ବିଚାରପତିଙ୍କ ବଙ୍ଗଳାକୁ ଆକ୍ରମଣ କଲେ । ପ୍ରାୟ ତିନି ଚାରି ହଜାର ବିଦ୍ରୋହୀ ବଙ୍ଗଳାର କିଛି ଦୂରରେ ଅପେକ୍ଷା କରିଥାଆନ୍ତି । ବିଚାରପତିଙ୍କ ବଙ୍ଗଳା ସୁରକ୍ଷା ଦାୟିତ୍ୱରେ ଥିବା ସୈନ୍ୟ ଓ ବିଦ୍ରୋହୀ ପାଇକମାନଙ୍କ ମଧ୍ୟରେ ଗୁଳି ବିନିମୟ ହେଲା । ଏହା ପ୍ରାୟ ଦୁଇ ଚାରି ଘଣ୍ଟା ଧରି ଚାଲିଲା । ବିଦ୍ରୋହୀମାନଙ୍କ ମଧ୍ୟରୁ କେତେକ ବିଚାରପତିଙ୍କ ବଙ୍ଗଳା ଭିତରକୁ ମାଡ଼ି ଆସୁଥିବାବେଳେ ସରକାରୀ ସିପାହିମାନେ ତୋପ ମାଡ଼ କଲେ । ତା'ର ସମ୍ମୁଖୀନ ହୋଇ ନ ପାରି ପାଇକ ବାହିନୀ ଛତ୍ରଭଙ୍ଗ ଦେଲେ । ଏଥିରେ ୧୫ ଜଣ ପାଇକ ନିହତ ହେଲେ । ଅନେକ ଖଣ୍ଡିଆଖାବରା ହେଲେ । ଫଳରେ ସହରରେ ଉତ୍ତେଜନା ବୃଦ୍ଧି ପାଇଲା । ପାଇକବାହିନୀ କିନ୍ତୁ ସମୁଦ୍ରକୂଳ ଜଙ୍ଗଲରେ ଘାଟି କରି ରହିଲେ ।

୧୮୧୭ ଅପ୍ରେଲ ମାସ ୧୪ ତାରିଖରେ ଜଗବନ୍ଧୁ ପ୍ରାୟ ଦଶ ହଜାରରୁ ଊର୍ଦ୍ଧ୍ୱ ଘୁମୁସର କନ୍ଧ ଓ ପାଇକ ସୈନ୍ୟ ଧରି ପୁରୀ ସହରରେ ପ୍ରବେଶ କଲେ । ଏଥିରେ ପୁରୀରେ ଘୋର ଉଦ୍ଦୀପନା ସୃଷ୍ଟି ହେଲା । ସହରର ବହୁ ଅଧିବାସୀ ବିଦ୍ରୋହୀ ପାଇକମାନଙ୍କ ସହିତ ଯୋଗ ଦେଲେ । ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ପାଇକ ଓ ଟହଲିଆମାନେ ଏପରିକି ଜଗନ୍ନାଥ ମନ୍ଦିରର ସେବକ ଶ୍ରେଣୀର ଲୋକେ ଏଥିରେ ଯୋଗ ଦେଲେ । ପ୍ରବଳ ଉନ୍ମାଦନା ଶ୍ରୀମନ୍ଦିରରେ ମଧ୍ୟ ଦେଖାଦେଲା । ସେବକମାନେ 'ଇଂରେଜ ରାଜତ୍ୱ ଲୋପ ହେଲା ଓ ମୁକୁନ୍ଦଦେବ ଓଡ଼ିଶାର ରାଜା ହେଲେ ବୋଲି ଘୋଷଣା କରିଦେଲେ ।' ଉତ୍ତ୍ୟକ୍ତ ପାଇକସେନା ଓ ସେବକ ଶ୍ରେଣୀର ଲୋକେ ଇଂରେଜ ସିପାହିମାନଙ୍କ ଉପରେ ଆକ୍ରମଣ କଲେ । ଜଣେ ଇଉରୋପୀୟଙ୍କୁ ହତ୍ୟା କରାଗଲା । ଯେଉଁ ସିପାହିମାନେ ତାଙ୍କୁ ରକ୍ଷା କରିବାକୁ ଚେଷ୍ଟା କଲେ, ସେମାନଙ୍କୁ ମଧ୍ୟ ହତ୍ୟା କରାଗଲା ।

ବ୍ରିଟିଶ ବିରୋଧୀ କାର୍ଯ୍ୟକଳାପ ଉଗ୍ରରୂପ ଧାରଣ କରିଥିବା ଦେଖି କ୍ୟାପଟେନ୍ ୱାର୍ଲିଙ୍ଗଟନ୍ ଆତଙ୍କିତ ହୋଇପଡ଼ିଲେ । ସେ ପାଇକମାନଙ୍କର ମୁକାବିଲା କରିବାକୁ ସାହସ କରି ନ ଥିଲେ । ପୂର୍ବ ପଟେ ପାଇକମାନେ ଘାଟି କରି ରହିଥିଲେ । ଦକ୍ଷିଣ ଦିଗରେ ସମୁଦ୍ର ଓ ପଶ୍ଚିମରେ ପାଇକମାନେ ରହିଥିବା ଦେଖିଲେ । ତିନିଆଡ଼େ

ଘେର ଭିତରେ ସେମାନେ ରହିଥିବାରୁ ବିଦ୍ରୋହୀମାନେ ଆକ୍ରମଣ କରିବାକୁ ସୁବିଧା ହେବ ବୋଲି ଜାଣିଲେ । ବ୍ରିଟିଶ ଅଫିସରମାନଙ୍କ ପାଖରେ ମଧ୍ୟ ରସଦ ଯଥେଷ୍ଟ ନ ଥିଲା । ଅନ୍ୟ ଉପାୟ ନ ଦେଖି କ୍ୟାପଟେନ୍ ଓ୍ୱାର୍ଲିଙ୍ଗଟନ୍, ଦୁଇ ଜଣ ଲୁଣ ଏଜେଣ୍ଟ (ବେଚର୍ ଓ ଯାତ୍ରୀ ଟିକସର କଲେକ୍ଟର ବୁସଭି) ପୁରୀ ପରିତ୍ୟାଗ କରି କଟକ ଆଡ଼କୁ ପଳାଇଲେ । ସେମାନଙ୍କ ଗଲାପରେ ବିଦ୍ରୋହୀମାନଙ୍କ ସହିତ ମିଶି ମନ୍ଦିରର ପଣ୍ଡାମାନେ ସରକାରୀ ତହବିଲ ଲୁଟ କରି ୩୧୯୦୦ଟଙ୍କା ନେଇଗଲେ । ବ୍ରିଟିଶ ବଙ୍ଗଳାଗୁଡ଼ିକରେ ଅଗ୍ନିସଂଯୋଗ କରାଗଲା । ପୁରୀ ସହର ବ୍ରିଟିଶ ଶାସନରୁ ମୁକ୍ତ ହେଲା । ବିଜୟ ଉଲ୍ଲାସରେ ସହର ପ୍ରକମ୍ପିତ ହେବାକୁ ଲାଗିଲା ।

**ରାଜାଙ୍କ ସହିତ ଆଲୋଚନା** – ପୂର୍ବକଳ୍ପିତ ଯୋଜନା ଅନୁଯାୟୀ ଜଗବନ୍ଧୁ ଅପ୍ରେଲ ମାସ ୧୪ ତାରିଖରେ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ସାକ୍ଷାତ୍ କଲେ । ସେତେବେଳେ ସେ ବାଲିସାହି ନଅରରେ ଅବସ୍ଥାନ କରୁଥିଲେ । ବକ୍‌ସି ପ୍ରସ୍ତାବ ଦେଲେ ଯେ ରାଜା ତାଙ୍କର ପରିବାରବର୍ଗଙ୍କୁ ଧରି ସରକାରଙ୍କ କଟକଣା ଅମାନ୍ୟ କରି ଖୋରଧା ଯିବେ ଓ ତାଙ୍କୁ ପୁନର୍ବାର ଖୋରଧା ରାଜସିଂହାସନରେ ବସାଯିବ । ବକ୍‌ସିଙ୍କ ସାଥିରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଦେବାନ କୃଷ୍ଣଚନ୍ଦ୍ର ବିଦ୍ୟାଧର ଭ୍ରମରବର ଓ ପ୍ରାୟ ସବୁ ପାଇକ ସରଦାରମାନେ ଥିଲେ । ବ୍ରିଟିଶ ଅଫିସରମାନଙ୍କ ପଳାୟନ ପରେ ସେମାନଙ୍କ ବଙ୍ଗଳା, ଅଫିସ ଓ ଅଣଓଡ଼ିଆଙ୍କ ଅଫିସ ସବୁକୁ ଭଙ୍ଗାରୁଜା କଲେ । ସେଥିରୁ ସଂଗ୍ରହ କରାଯାଇଥିବା ଆସବାବପତ୍ର ଓ ଅନ୍ୟାନ୍ୟ ଜିନିଷପତ୍ର ରାଜାଙ୍କ ନଅରରେ ଠୁଳ କରାଗଲା । କେତେକ ଜିନିଷପତ୍ରକୁ ନଅର ନିକଟସ୍ଥ ଏକ ସ୍ଥାନରେ ପୋତି ମାଟି ଘୋଡ଼ାଇ ଦିଆଯାଇଥିଲା ।

ବାଲିସାହି ନଅରରେ ପ୍ରାୟ ତିନି ଦିନ ପର୍ଯ୍ୟନ୍ତ ଆଲୋଚନା ଚାଲିଲା । ରାଜା ପରିବାରବର୍ଗଙ୍କୁ ଧରି ଖୋରଧା ଯିବା ସ୍ଥିର ହେଲା । ସହସ୍ର ସହସ୍ର ପାଇକଙ୍କ ଗହଣରେ ରାଜା ମୁକୁନ୍ଦଦେବଙ୍କୁ ସିଂହାସନରେ ବସାଇବାପାଇଁ ପୁରୀଠାରୁ ଖୋରଧା ପର୍ଯ୍ୟନ୍ତ ଶୋଭାଯାତ୍ରାରେ ଯିବେ ବୋଲି ଘୋଷଣା କରାଗଲା । କିନ୍ତୁ ବ୍ରିଟିଶ ସେନାଧ୍ୟକ୍ଷଙ୍କ ଦୃଢ଼ କାର୍ଯ୍ୟାନୁଷ୍ଠାନ ହେତୁ ଏହା ସମ୍ଭବ ହୋଇପାରି ନ ଥିଲା ।

ଜଗବନ୍ଧୁ ପୁରୀ ସହରର ସୁରକ୍ଷାପାଇଁ କେତେକ ପଦକ୍ଷେପ ନେଲେ । ଇଂରେଜ ସୈନ୍ୟଙ୍କ ପୁନଃ ଆକ୍ରମଣର ମୁକାବିଲାପାଇଁ ସହର ଚାରିପଟେ ପାଇକମାନଙ୍କୁ ମୁତୟନ କରାଗଲା । ବଡ଼ ବଡ଼ ପଥର ଓ ଢିମା ରଖି ରାସ୍ତା ଅବରୋଧ କରାଗଲା ।

ଅଷ୍ଟମ ପରିଚ୍ଛେଦ

# ସାମରିକ କାର୍ଯ୍ୟାନୁଷ୍ଠାନ

ବିଦ୍ରୋହର ଭୟାବହତା ଦୃଷ୍ଟିରୁ ଖୋରଧା, ପୁରୀ, ପିପିଲି, ଲେମ୍ବାଇ ଓ କୋଠଦେଶ ପ୍ରଭୃତି ଅଞ୍ଚଳରେ ସାମରିକ ଆଇନ ପ୍ରବର୍ତ୍ତିତ ହେଲା । ପ୍ରଚଳିତ ସାଧାରଣ ଆଇନ କାନୁନକୁ ରଦ୍ଦ କରାଯାଇ ସମଗ୍ର ଓଡ଼ିଶା ଉପଦ୍ରୁତ ଅଞ୍ଚଳ ବୋଲି ଘୋଷଣା କରାଗଲା । ବିଦ୍ରୋହ ଗଡ଼ଜାତ ଅଞ୍ଚଳକୁ ବ୍ୟାପିଯିବା ଆଶଙ୍କାରେ ଗଡ଼ଜାତ ରାଜାମାନଙ୍କୁ ବ୍ରିଟିଶ ବିରୋଧୀ ଆନ୍ଦୋଳନରେ ଭାଗୀଦାର ନ ହେବାପାଇଁ କଡ଼ା ପରୱାନା ଜାରି କରାଗଲା । ମେଜର ଜେନେରାଲ ଜି. ମାର୍ଟିଣ୍ଡେଲଙ୍କୁ କଟକ ଜିଲ୍ଲାର ସାମରିକ କମିସନର ଭାବେ ନିଯୁକ୍ତ କରାଗଲା ।

ବିଭିନ୍ନ ସେନା ଦଳକୁ ବିଭିନ୍ନ ସ୍ଥାନକୁ ଅଗ୍ରସର ହେବାପାଇଁ ନିର୍ଦ୍ଦେଶ ଦିଆଗଲା । କ୍ୟାପ୍‌ଟେନ୍ ଲି. ଫେଭ୍ରେଙ୍କୁ ଏକ ସୈନ୍ୟବାହିନୀର ଦାୟିତ୍ୱ ଦେଇ ଖୋରଧାଆଡ଼କୁ ପଠାଗଲା । ଅପ୍ରେଲ ମାସ ୯ ତାରିଖରେ ସେ କଟକରୁ ଗୋଟିଏ ଟାଣୁଆ ସୈନ୍ୟ ଦଳ ଧରି ଖୋରଧା ଆଡ଼କୁ ଅଗ୍ରସର ହେଲେ । ରାସ୍ତାରେ କେତେକ ପ୍ରତିବନ୍ଧକ ଅତିକ୍ରମ କରି ସେ ଖୋରଧାରେ ପହଞ୍ଚିଲେ । ସେଠାରେ ପାଇକମାନେ ପ୍ରବେଶ ପଥରେ ବଡ଼ ବଡ଼ ପଥର ଓ ଢିମା ରଖି ଖୋରଧାକୁ ରକ୍ଷାପାଇଁ ଉଦ୍ୟମ କରୁଥିବା ସେ ଦେଖିବାକୁ ପାଇଲେ । ବ୍ରିଟିଶ ସୈନ୍ୟମାନଙ୍କ ସାହାଯ୍ୟରେ ସେ ସବୁ ପ୍ରତିବନ୍ଧକକୁ ହଟାଯାଇ ଖୋରଧା ମଧ୍ୟରେ ପ୍ରବେଶ କରିବାକୁ ବସିଲେ । ଶହ ଶହ ଖୋରଧା ପାଇକ ସେନା ତା'ର ପ୍ରତିରୋଧ କଲେ । କିଛି ସମୟ ଧରି ସଂଘର୍ଷ ହେଲା । କିନ୍ତୁ ବ୍ରିଟିଶ ସେନାବାହିନୀର ଶକ୍ତିଶାଳୀ ତୋପ ଓ ବନ୍ଧୁକ ଆଗରେ ପାଇକମାନେ ବେଶି ସମୟ ରହି ନ ପାରି ଛତ୍ରଭଙ୍ଗ ଦେଲେ ।

ଲି. ଫେଭ୍ରେ ଖୋରଧାରେ ପହଞ୍ଚି ଜଗବନ୍ଧୁଙ୍କୁ ଖୋଜିବାରେ ଲାଗିଲେ । କିନ୍ତୁ ତାଙ୍କର କୌଣସି ପତ୍ତା ମିଳି ନ ଥିଲା । ସେ ତାଙ୍କୁ ଖୋଜିବାକୁ ଯାଇ ବାଜପୁରଠାରେ ପହଞ୍ଚିଲେ । ବାଜପୁର କଦଳିବାଡ଼ିରେ ପାଇକ ବସତିମାନ ଥିଲା । ତାହାକୁ ପୋଡ଼ି ଧ୍ୱଂସ କରିଦେଲେ । ସେଦିନ ଅର୍ଥାତ୍ ଅପ୍ରେଲ ମାସ ୧୬ ତାରିଖ ସନ୍ଧ୍ୟାବେଳେ ତାପଙ୍ଗରେ ପହଞ୍ଚିଲେ । ୧୭ ତାରିଖ ସକାଳୁ ସେଠାରୁ ବାହାରି କଣାସରେ

ପହଞ୍ଚିଲେ । ସନ୍ଧ୍ୟାବେଳେ ଲୁଣା ନଦୀ ପାରହୋଇ ନଈବନ୍ଧ ଉପରେ ଥିବା ନୂଆଗାଁରେ ଡେରା ପକାଇଲେ । ୧୮ ତାରିଖ ସକାଳେ ନୂଆଗାଁରୁ ବାହାରିଲେ । ଦୋବନ୍ଧାଠାରେ ପହଞ୍ଚିଲା ବେଳକୁ ସେଠାରେ ପ୍ରାୟ ୧ ହଜାରରୁ ଅଧିକ ସଂଗ୍ରାମୀ ପାଇକ ବନ୍ଧ ଉପରେ ରହି ବ୍ରିଟିଶ ସେନାଙ୍କ ମୁକାବିଲାପାଇଁ ପ୍ରସ୍ତୁତ ହେଉଥିବାର ଦେଖିଲେ । କାଳବିଳମ୍ବ ନ କରି ଲି.ଫେଭ୍ରେ ତୋପରୁ ଗୁଳି ବର୍ଷଣ କଲେ । ପାଇକମାନଙ୍କ ପାଖେ ତୋପ ବା ଆଧୁନିକ ବନ୍ଧୁକ ନ ଥିଲା । ସେମାନେ ପୁରୁଣା ନଳୀ ବ୍ୟବହାର କରୁଥିଲେ । ଫଳରେ ପାଇକମାନେ ବ୍ରିଟିଶ ସେନାଙ୍କ ସମ୍ମୁଖୀନ ହୋଇ ନ ପାରି ଛତ୍ରଭଙ୍ଗ ଦେଲେ । ଲି. ଫେଭ୍ରେ ୧୮ ତାରିଖ ଦିନ ୨ଟାବେଳେ ପୁରୀ ସହରରେ ପହଞ୍ଚିଲେ ।

ପୁରୀ ସହରରୁ ଇଂରେଜ ଅଫିସରମାନେ ପଳାଇ ଯାଇଥିଲେ । ସହରରେ ଶାସନ ଭାଙ୍ଗି ପଡ଼ିଥିବା ଦେଖିଲେ । ଶାସନ ପୁଣି ଜାରି କରିବା ଓ ରାଜାଙ୍କୁ ଅଟକ ରଖିବା ଆବଶ୍ୟକ ମନେ କଲେ । ଲି. ଫେଭ୍ରେ ପୁରୀରେ ପ୍ରବେଶ କରିବା ପୂର୍ବରୁ ରାଜା ଅନ୍ୟତ୍ର ଚାଲିଯିବାପାଇଁ ବସିଥିଲେ । ଏଥିପାଇଁ ଷୋଳଟି ପାଲିଙ୍କି ମଧ୍ୟ ସଜ୍ଜିତ କରି ରଖିଥିଲେ । ଲି. ଫେଭ୍ରେ ସଙ୍ଗେ ସଙ୍ଗେ ରାଜାଙ୍କୁ ବନ୍ଦୀ କଲେ ।

ବକ୍ସି ଜଗବନ୍ଧୁ ପୁରୀ ସହରରେ ଥିଲେ । ମାତ୍ର ଲି. ଫେଭ୍ରେଙ୍କ ପୁରୀ ଆସୁଥିବା ଶୁଣି ଜଗବନ୍ଧୁ ହତୋତ୍ସାହ ହୋଇପଡ଼ିଲେ । ଇଂରେଜ ସେନାପତି ପ୍ରାୟ ୫୫୦ ଜଣ ସୁସଜ୍ଜିତ ସିପାହି ଫୌଜ ଓ କମାଣ ବନ୍ଧୁକ ଧରି ଅଗ୍ରସର ହେଉଥିବା ଶୁଣିବାକୁ ପାଇଲେ । ସେମାନଙ୍କର ମୁକାବିଲା କରିବା ସମ୍ଭବ ନୁହେଁ ବୋଲି ସେ ଉପଲବ୍‌ଧି କଲେ । ସେ ପୁରୀ ସହର ତ୍ୟାଗ କରି ବାଣପୁର ଆଡ଼କୁ ପଳାୟନ କଲେ । ଦେବାନ କୃଷ୍ଣଚନ୍ଦ୍ର ମଧ୍ୟ ବିଦ୍ରୋହୀ ପାଇକମାନଙ୍କୁ ନେଇ କଣାସ ଅଞ୍ଚଳକୁ ଚାଲିଗଲେ । ସେମାନଙ୍କୁ ଆକ୍ରମଣ କରିବାକୁ ଲି. ଫେଭ୍ରେ ପୂର୍ବରୁ ଠିକ୍ କରିଥିଲେ । ମାତ୍ର ସହରର ଅବସ୍ଥା ଦୃଷ୍ଟିରୁ ସେ ପୁରୀରେ ରହିଲେ ।

**ଗଭର୍ଣ୍ଣର ଜେନେରାଲଙ୍କ ଆଦେଶ** – ପୁରୀର ଭୟାବହ ଅବସ୍ଥାର ରିପୋର୍ଟ କଲିକତାରେ ପହଞ୍ଚିଲା । ସେଠାରେ ଅବସ୍ଥାପିତ ଗଭର୍ଣ୍ଣର ଜେନେରାଲ ଅବିଳମ୍ବେ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ବନ୍ଦୀ କରି କଲିକତାକୁ ପଠାଇଦେବାପାଇଁ ଆଦେଶ ଦେଲେ । ସେ ଆଦେଶ ପାଇବାମାତ୍ରେ ମେଜର ହାମିଲଟନ୍‌ଙ୍କ ଅଧିନାୟକତ୍ୱରେ ନେଟିଭ ଇନଫାଣ୍ଟ୍ରିର ଦଳେ ସିପାହିଙ୍କୁ ଅପ୍ରେଲ ୨୨ ତାରିଖରେ ପୁରୀ ପଠାଇବାପାଇଁ ସ୍ଥିର ହେଲା । ମାତ୍ର ପୁରୀରେ ଲି. ଫେଭ୍ରେ ରାଜା ମୁକୁନ୍ଦଦେବଙ୍କୁ ଅଟକ ରଖିଥିବା ଖବର ମିଳିବାରୁ ହାମିଲଟନ ପୁରୀ ଯିବା ସିଦ୍ଧାନ୍ତକୁ ୨୮ ତାରିଖ ପର୍ଯ୍ୟନ୍ତ ସ୍ଥଗିତ ରଖିଲେ ।

**ହାମିଲଟନ୍‌ଙ୍କ ପୁରୀ ଯାତ୍ରା** – ଖୋରଧା ରାଜାଙ୍କୁ କଟକ ଆଣିବା ନିମନ୍ତେ ହାମିଲଟନ୍ କଟକରୁ ଅପ୍ରେଲ ମାସ ୨୮ ତାରିଖରେ ପୁରୀ ଅଭିମୁଖେ ଯାତ୍ରା କଲେ । କାଠଯୋଡ଼ି ନଦୀ ପାର ହୋଇ ସେ ସାରଙ୍ଗଗଡ଼ଠାରେ ପହଞ୍ଚିଲେ । ସେଠାରେ ଧରମୁ ହରିଚନ୍ଦନଙ୍କ ନେତୃତ୍ୱରେ ବହୁ ପାଇକ ହାମିଲଟନ୍‌ଙ୍କୁ ଆକ୍ରମଣ କଲେ । ହାମିଲଟନ୍‌ଙ୍କ ପକ୍ଷରୁ ତୋପରୁ ଗୁଳିବର୍ଷଣ ହେଲା । କେତେ ଘଣ୍ଟା ଗୁଳିବର୍ଷଣ ପରେ ବିଦ୍ରୋହୀ ପାଇକମାନେ ଛତ୍ରଭଙ୍ଗ ଦେଲେ । ସେମାନେ ପଟିଆ ଓ ଦାରୁଠେଙ୍ଗ ଆଡ଼କୁ ପଳାଇଲେ । ହାମିଲଟନ୍ ଏହାପରେ ବିନା ବାଧାରେ ପିପିଲିରେ ପହଞ୍ଚିଲେ । ପିପିଲି ଅଞ୍ଚଳରେ ସାମରିକ ଆଇନ ଜାରି ହୋଇଥିଲା । ମାତ୍ର ଇଂରେଜ ଶାସନ ଭାଙ୍ଗି ପଡ଼ିଥିଲା । ଲୁଟତରାଜ ଚାଲିଥିଲା । ଏହା ବନ୍ଦ କରିବାପାଇଁ ପିପିଲି ଅଞ୍ଚଳରେ ଆର୍ମଷ୍ଟ୍ରଙ୍ଗଙ୍କ ନେତୃତ୍ୱରେ ଦଳେ ସୈନ୍ୟ ରଖି ହାମିଲଟନ୍ ପୁରୀ ଆଡ଼କୁ ଅଗ୍ରସର ହେଲେ । ବାଟରେ ତାଙ୍କୁ ପ୍ରତିରୋଧ କରାଯାଇ ନ ଥିଲା ।

ଜଗବନ୍ଧୁଙ୍କ ନେତୃତ୍ୱରେ ୧୮୧୭ ବିଦ୍ରୋହ ପରିଚାଳିତ ହେଉଥିଲେ ମଧ୍ୟ ରାଜାଙ୍କର ସମର୍ଥନ ଅଛି ବୋଲି ଇଂରେଜ ଶାସକମାନଙ୍କର ଧାରଣା ହୋଇଥିଲା । ମେଜର ହାମିଲଟନ୍‌ଙ୍କୁ ସେଥିପାଇଁ ରାଜାଙ୍କୁ ବନ୍ଦୀ କରି କଟକ ନେବାପାଇଁ ଆଦେଶ ଦିଆଯାଇଥିଲା । ହାମିଲଟନ୍‌ଙ୍କ ନିର୍ଦ୍ଦେଶ ଅନୁଯାୟୀ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ପୁରୀରେ ଥିବା ମାଜିଷ୍ଟ୍ରେଟଙ୍କ କ୍ୟାମ୍ପରେ ଉପସ୍ଥିତ ହେବାକୁ ପିଅନଦ୍ୱାରା ପରୱାନା ପଠାଗଲା । ସେହିପରି ରାଜାଙ୍କ ପୁତ୍ର ଜେନାମଣିଙ୍କୁ କ୍ୟାପଟେନ୍ ୱାର୍ଲିଙ୍ଗଟନଙ୍କ କ୍ୟାମ୍ପକୁ ପଠାଇବାକୁ ପରୱାନା ପଠାଗଲା । ଏସବୁ ପରୱାନା ପାଇ ରାଜାଙ୍କ ପରିବାର ଭୀତତ୍ରସ୍ତ ହୋଇପଡ଼ିଲେ । ବିଶେଷତଃ, ରାଜହଂସପୁରର ନାରୀମାନଙ୍କ କ୍ରନ୍ଦନ ଧ୍ୱନି ଏତେ ତୀବ୍ର ହୋଇପଡ଼ିଥିଲା ଯେ ତାହା ବହୁଦୂର ପର୍ଯ୍ୟନ୍ତ ଶୁଣିବାକୁ ମିଳିଥିଲା ।

ରାଜା ଦ୍ୱିତୀୟ ମୁକୁନ୍ଦଦେବ ଏହି ପରୱାନାର ଉତ୍ତରରେ ଜଣାଇଲେ ଯେ ସେ ନିର୍ଦ୍ଦୋଷ । ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ପରିଚାଳିତ ବିଦ୍ରୋହରେ ସେ ସମ୍ପୃକ୍ତ ନୁହନ୍ତି । ପୁଣି ଜଣାଇଲେ ଯେ ଏପରି କଠୋର ଆଦେଶ ପାଇ ରାଜମାତା ଏତେଦୂର ଦୁଃଖରେ ଅଭିଭୂତା ହୋଇପଡ଼ିଛନ୍ତି ଯେ ଆତ୍ମହତ୍ୟା କରିବାକୁ ବସିଛନ୍ତି ।

ଇଂରେଜ ସରକାର କିନ୍ତୁ ରାଜାଙ୍କର କାତର ପ୍ରାର୍ଥନାକୁ କର୍ଣ୍ଣପାତ କରି ନ ଥିଲେ । ରାଜା, ତାଙ୍କ ବାଳୁତପୁତ୍ର, ରାଣୀ ଓ ପରିବାରର ସଦସ୍ୟମାନଙ୍କୁ ପୋଲିସ ଘେରରେ ଅଣାଯାଇ ବ୍ରିଟିଶ ସେନାବାହିନୀ ତତ୍ତ୍ୱାବଧାନରେ ରଖାଗଲା । କେବଳ ସେତିକି ନୁହେଁ, କଡ଼ା ପହରାରେ ସେମାନଙ୍କୁ ଧରି ଲି. ଫେଭରେ କଟକ ଅଭିମୁଖେ ଯାତ୍ରା କଲେ ।

ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ବନ୍ଦୀ କରି ନିଆଯିବା ଖବର ଚାରିଆଡ଼େ ବ୍ୟାପିଗଲା । ବିଦ୍ରୋହୀ ପାଇକମାନେ ଉତ୍ତ୍ୟକ୍ତ ହୋଇପଡ଼ିଲେ । ସେମାନେ ରାଜା ଓ ତାଙ୍କର ପରିବାରବର୍ଗଙ୍କୁ ଲି. ଫେଭ୍‌ରେଙ୍କ ହାତରୁ ଛଡ଼ାଇ ନେବାପାଇଁ ପ୍ରସ୍ତୁତ ହେଲେ । ବିଭିନ୍ନ ସ୍ଥାନରୁ ପ୍ରାୟ ଅଢ଼େଇ ହଜାର ପାଇକ ପିପିଲିଠାରେ ଠୁଳ ହେଲେ । ଫେଭ୍‌ରେ ପିପିଲିରେ ପହଞ୍ଚିବାମାତ୍ରେ ବିଦ୍ରୋହୀମାନେ ଇଂରେଜ ସୈନ୍ୟଙ୍କ ଉପରେ ଭୀଷଣ ଆକ୍ରମଣ କଲେ । ମାତ୍ର କ୍ୟାପଟେନ୍ ଲି. ଫେଭ୍‌ରେଙ୍କ ତୋପ ଆକ୍ରମଣର ସମ୍ମୁଖୀନ ହୋଇ ନ ପାରି ଛତ୍ରଭଙ୍ଗ ଦେଲେ । ପିପିଲି ସଂଘର୍ଷରେ ୧୯ଜଣ ବିଦ୍ରୋହୀ ପାଇକ ନିହତ ହେଲେ । ୮୦ରୁ ୧୦୦ ଜଣ ପାଇକ ଆଘାତପ୍ରାପ୍ତ ହେଲେ । ଲି. ଫେଭ୍‌ରେ ଆଉ ପ୍ରତିରୋଧର ସମ୍ମୁଖୀନ ହୋଇ ନ ଥିଲେ । ମେ ମାସ ୧୧ ତାରିଖରେ ସେ ରାଜା ମୁକୁନ୍ଦଦେବ ଓ ତାଙ୍କ ପରିବାରକୁ ଧରି କଟକରେ ପହଞ୍ଚିଲେ ।

ବାରବାଟୀ ଦୁର୍ଗରେ ରାଜାଙ୍କୁ କଡ଼ା ପ୍ରହରାରେ ରଖାଗଲା । ରାଜା ଓ କେନାମଣିଙ୍କୁ ବନ୍ଦୀ ଥିବା ସମୟରେ ଦୈନିକ ପଚିଶ ଟଙ୍କା ଓ ପୁରୀରେ ରାଜାଙ୍କ ପରିବାରର ଭରଣପୋଷଣପାଇଁ ମାସିକ ପାଞ୍ଚ ଶହ ଟଙ୍କାର ବ୍ୟବସ୍ଥା ହେଲା ।

**ନିମାପଡ଼ା ଆକ୍ରମଣ** — ପିପିଲିଠାରେ ଇଂରେଜମାନଙ୍କ ସୈନ୍ୟ ସମାବେଶ ଦେଖି ବିଦ୍ରୋହୀସେନା ସେ ସ୍ଥାନ ଛାଡ଼ି ନିମାପଡ଼ା ଆଡ଼କୁ ପଳାଇଲେ । ସେଠାରେ କେହି ସୈନ୍ୟ ନ ଥିଲେ । ବିଦ୍ରୋହୀମାନେ ନିମାପଡ଼ା ଥାନା ପୋଡ଼ିଦେଲେ । ଏ ଖବର ପାଇ ଦେ. ପିଅରସନ୍ ନାମକ ଜଣେ ସେନାଧକ୍ଷଙ୍କୁ ୮୦ ଜଣ ବିଶିଷ୍ଟ କମାଣ ବାହିନୀ ସହ ନିମାପଡ଼ା ପଠାଗଲା । ସେ ନିମାପଡ଼ାରେ ପହଞ୍ଚିଲାବେଳକୁ ବିଦ୍ରୋହୀମାନେ ସେ ସ୍ଥାନ ଛାଡ଼ି ପଳାଇ ଯାଇଥିଲେ ।

ଇଂରେଜମାନେ ରାଜାଙ୍କୁ ବନ୍ଦୀ କରିବା ପରେ ବିଦ୍ରୋହୀମାନଙ୍କର ମନୋବଳ ଭାଙ୍ଗିଗଲା । ଇଂରେଜମାନଙ୍କର ବିଭିନ୍ନ ଅଞ୍ଚଳକୁ ସୈନ୍ୟଚାଳନା ହେବା ଫଳରେ ଖୋରଧା, ପୁରୀ, ପିପିଲି ପ୍ରଭୃତି ଅଞ୍ଚଳରୁ ବିଦ୍ରୋହ ଥମି ଆସିଲା । ବକ୍‌ସି ଜଗବନ୍ଧୁ କିନ୍ତୁ ଦବିଯାଇ ନ ଥିଲେ । ସେ ଦେବାନ କୃଷ୍ଣଚନ୍ଦ୍ର ଭ୍ରମରବରଙ୍କ ସଙ୍ଗେ ମିଶି ଦକ୍ଷିଣ ଓଡ଼ିଶା ଓ ଗଡ଼ଜାତ ଅଞ୍ଚଳରେ ସଶସ୍ତ୍ର ଆକ୍ରମଣପାଇଁ ଲାଗିପଡ଼ିଲେ । ଫଳରେ ବିଦ୍ରୋହୀମାନେ କଟକ ଓ ପ୍ରଦେଶର ଅନ୍ୟ ଅଞ୍ଚଳକୁ ଯାଉଥିବା ରାସ୍ତା ସବୁ ଛିନ୍ନ କଲେ ।

**ଗୋପ ଆକ୍ରମଣ** — ମେଜର ଜେନେରାଲ ମାର୍ଟିଣ୍ଡେଲ ଖୋରଧାରେ ବିଦ୍ରୋହ ଦମନ କଲେ । ଫଳରେ ବହୁସଂଖ୍ୟକ ବିଦ୍ରୋହୀ ପାଇକ ଗୋପ ଅଞ୍ଚଳକୁ ଆସି ବିଦ୍ରୋହ ଆରମ୍ଭ କଲେ । ବର୍ଷା ଋତୁ ଆରମ୍ଭ ହୋଇଥିବା ଯୋଗୁଁ ଗମନାଗମନର

ଅସୁବିଧାପାଇଁ ଇଂରେଜ କର୍ତ୍ତୃପକ୍ଷ କାର୍ଯ୍ୟାନୁଷ୍ଠାନ କରିପାରିଲେ ନାହିଁ । ବିଦ୍ରୋହୀ ସରଦାର କରୁଣାକର ପରମଗୁରୁ ସେଠାର ନେତୃତ୍ୱ ନେଉଥିଲେ ।

**କୁଜଙ୍ଗକୁ ସୈନ୍ୟ ପ୍ରେରଣ** – ଜଗବନ୍ଧୁ କୁଜଙ୍ଗ ଅଞ୍ଚଳକୁ ଯାଇ ନାରାୟଣ ପରମଗୁରୁ ଓ ବାମଦେବ ପାଟଯୋଶୀଙ୍କ ସହାୟତାରେ ଆକ୍ରମଣକୁ ତୀବ୍ରତର କଲେ । କୁଜଙ୍ଗ ବିଦ୍ରୋହ ଏକ ଗଣ ଆନ୍ଦୋଳନରେ ପରିଣତ ହେଲା । ଏଥିରେ ରାଜା ମଧୁସୂଦନ କ୍ଷେଣ୍ଣଙ୍କର ହାତ ଥିବା ସରକାର ସନ୍ଦେହ କଲେ । ତାଙ୍କୁ ଅବିଳମ୍ବେ କଟକ ଆସିବାକୁ କଟକର କଲେକ୍ଟର ଆଦେଶ ଦେଲେ । ଏହା ୧୮୧୬ ଅପ୍ରେଲ ମାସ ପ୍ରଥମ ସପ୍ତାହରେ ଘୋଡ଼ସବାର ହରକାର ହାତରେ ରାଜାଙ୍କ ପାଖକୁ ପଠାଗଲା । ରାଜା ଏ ପରୱାନା ପାଇ କଟକ ଯିବାପାଇଁ ପ୍ରସ୍ତୁତ ଅଛନ୍ତି ବୋଲି କଲେକ୍ଟରଙ୍କୁ ଜଣାଇଲେ । ମାତ୍ର ନାନା ଆଳରେ ଘୋଡ଼ସବାରମାନଙ୍କୁ ଦଶଦିନରୁ ଊର୍ଦ୍ଧ୍ୱ ପାରାଦ୍ୱୀପରେ ଅଟକାଇ ରଖିଲେ । ରାଜା ନ ଯିବାରୁ ଆଉଥରେ ପରୱାନା ରାଜାଙ୍କ ପାଖକୁ ପଠାଗଲା । ଏହି ପରୱାନା ପାଇ ରାଜା କଟକ ଅଭିମୁଖେ ଯାତ୍ରା କଲେ । କିନ୍ତୁ ପାରାଦ୍ୱୀପଠାରୁ ୪ ମାଇଲ ଦୂର ଏକ ପେଣ୍ଠ ଗ୍ରାମରେ ପ୍ରାୟ ଏକ ସପ୍ତାହ କାଳ ଅଟକି ରହିଲେ । ଏହାପରେ ଆଉ କିଛି ଦୂର ପଥୁରିଆ ଗ୍ରାମରେ ପହଞ୍ଚି ସେଠାରେ ରହିଲେ । ରାଜାଙ୍କର ଏ ପ୍ରକାର କାଳକ୍ଷେପଣ ନୀତିରେ ଇଂରେଜ କର୍ତ୍ତୃପକ୍ଷ କ୍ରୋଧାନ୍ୱିତ ହୋଇପଡ଼ିଲେ । ତିରଣରେ ଥିବା ଦାରୋଗା ପଥୁରିଆରେ ରାଜାଙ୍କୁ ଭେଟି ଅବିଳମ୍ବେ କଟକ ଯିବାକୁ କହିଲେ । ଏହା ନ କଲେ ତାଙ୍କ ପ୍ରତି କଠୋର କାର୍ଯ୍ୟାନୁଷ୍ଠାନ ହେବ ବୋଲି ସତର୍କ କରିଦେଲେ । ରାଜା ତା'ର ପରଦିନ କଟକ ଯିବେ ବୋଲି ଦାରୋଗାଙ୍କୁ ଜବାବ ଦେଲେ । ମାତ୍ର ସେହିଦିନ ରାତ୍ରିରେ ପାଇକମାନେ ରାଜାଙ୍କ ନିକଟରେ ପହଞ୍ଚି ବିଦ୍ରୋହରେ ଯୋଗ ଦେବାକୁ ବାଧ୍ୟ କଲେ । ରାଜା ପାଲିଙ୍କିରେ ବସି ପାରାଦ୍ୱୀପ ଫେରିଗଲେ ।

ଇଂରେଜ କର୍ତ୍ତୃପକ୍ଷ ମଧୁସୂଦନ କ୍ଷେଣ୍ଣଙ୍କ କାର୍ଯ୍ୟକଳାପରେ ଉତ୍‌କ୍ଷିପ୍ତ ହୋଇପଡ଼ିଲେ । ମାତ୍ର ଖୋରଧା, ବାଣପୁର ପ୍ରଭୃତି ଅଞ୍ଚଳରେ ପାଇକମାନଙ୍କର ଆକ୍ରମଣ ଥମି ନ ଥିଲା । ଯଥେଷ୍ଟ ସଂଖ୍ୟକ ସିପାହି କୁଜଙ୍ଗ ଅଞ୍ଚଳକୁ ପଠାଇବା ସମ୍ଭବ ହୋଇ ନ ଥିଲା । ଜୁନ ମାସରେ ମଧ୍ୟ ବର୍ଷା ଆରମ୍ଭ ହୋଇଯିବାରୁ କୁଜଙ୍ଗ ଅଞ୍ଚଳକୁ ଯିବା କଷ୍ଟସାଧ୍ୟ ହୋଇପଡ଼ିଲା । ତେଣୁ ବର୍ଷାଋତୁ ପରେ କୁଜଙ୍ଗ ରାଜାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ହେବା ସ୍ଥିର ହେଲା ।

୧୮୧୭ ସେପ୍ଟେମ୍ବର ମାସରେ କୁଜଙ୍ଗରେ ସାମରିକ ଆଇନ ପ୍ରଚଳନ ହେଲା । କ୍ୟାପଟେନ୍ କେନେଟ୍ କୁଜଙ୍ଗ ଅଞ୍ଚଳ ବିଦ୍ରୋହ ଦମନର ନେତୃତ୍ୱ ନେଲେ ।

ସେପ୍ଟେମ୍ବର ମାସ ୧୩ ତାରିଖ କେନେଟ୍ ଦଳେ ସିପାହିଙ୍କୁ ଧରି ଦେଶୀ ଡଙ୍ଗାମାନଙ୍କରେ ନଈ ବାଟରେ କୁଜଙ୍ଗ ଅଭିମୁଖେ ଯାତ୍ରା କଲେ । କୁଜଙ୍ଗ ରାଜାଙ୍କର ପୂର୍ବତନ କର୍ମଚାରୀ ବାଲୁଙ୍କେଶ୍ୱର ଦାସ ଓ ହରିଶପୁର ନିବାସୀ କୃପାସିନ୍ଧୁ ଛାମୁପଟ୍ଟନାୟକ କେନେଟ୍‌ଙ୍କ ପଥପ୍ରଦର୍ଶକ ହେଲେ । ନଈରେ ପାଣିର ସୁଅ ଥିବାରୁ ଡଙ୍ଗାଗୁଡ଼ିକ ଶୀଘ୍ର ଗଲା । ସେପ୍ଟେମ୍ବର ମାସ ୧୪ ତାରିଖ ଦିନ ଦ୍ୱିପ୍ରହରରେ ପାରାଦ୍ୱୀପରେ ପହଞ୍ଚିଲେ ।

ପାରାଦ୍ୱୀପର ଚାରିପଟେ ଘାଟି କରି ପାଇକମାନେ ଜଗି ରହିଥିଲେ । ଇଂରେଜ ସିପାହିମାନଙ୍କ ଉପରେ ସେମାନେ ଛୋଟ ଛୋଟ ଡଙ୍ଗାରେ ବସି ଗୁଳି ଚଳାଇଲେ । କେନେଟ୍‌ଙ୍କ ଡଙ୍ଗାଗୁଡ଼ିକ ବଡ଼ ବଡ଼ ଥିଲା । ସୁଅ ଟାଣ ଥିବାରୁ ଡଙ୍ଗା ସମ୍ଭାଳି ବିଦ୍ରୋହୀମାନଙ୍କ ମୁକାବିଲା କରିବା ସହଜସାଧ୍ୟ ନ ଥିଲା । ସେ ତେଣୁ ନଈ କୂଳରେ ଡଙ୍ଗାଗୁଡ଼ିକ ଲଗାଇ ସିପାହିମାନଙ୍କୁ ନେଇ ବିଦ୍ରୋହୀମାନଙ୍କ ଘାଟି ଉପରେ ପ୍ରବଳ ଆକ୍ରମଣ କଲେ । ବିଦ୍ରୋହୀ ପାଇକମାନେ ଘାଟି ଛାଡ଼ି ପାରାଦ୍ୱୀପ ଭିତରେ ପଶିଲେ । ଲେଫଟନାଣ୍ଟ ଫରେଷ୍ଟର ବିଦ୍ରୋହୀ ପାଇକମାନଙ୍କ ପଛରେ ଗୋଡ଼ାଇଲେ । ପାରାଦ୍ୱୀପ ଗ୍ରାମରେ ୧୫ ଜଣ ବିଦ୍ରୋହୀ ପାଇକଙ୍କୁ ଗୁଳି କରି ହତ୍ୟା କଲେ । ସେମାନଙ୍କ ପାଖେ ଥିବା ଅସ୍ତ୍ରଶସ୍ତ୍ର ଅକ୍ତିଆର କଲେ । ଗ୍ରାମର ସୁରକ୍ଷାପାଇଁ ଗାଁ ମୁଣ୍ଡରେ ତିନି ପାଉଣ୍ଡିଆ ଗୋଳା ବୃଷ୍ଟି କରିବା ଭଳି ତିନୋଟି ତୋପ ଥିଲା । ତାହା ସରକାରୀ ସିପାହିମାନଙ୍କ ହାତରେ ପଡ଼ିଲା ।

କ୍ୟାପଟେନ୍ କେନେଟ୍ ଓ ଲେଫଟନାଣ୍ଟ ଉଡ୍ – ଏ ଦୁହେଁ ଦଳେ ସିପାହି ଧରି ଅନ୍ୟ ତିନି ଆଡ଼େ ଅଗ୍ରସର ହେଲେ । କିନ୍ତୁ ରାତ୍ରିର ଘନ ଅନ୍ଧାରରେ ପାଇକମାନେ ଜଙ୍ଗଲ ମଧ୍ୟରେ ଲୁଚିଗଲେ । ପାରାଦ୍ୱୀପଗଡ଼ରେ ସିପାହିମାନେ ରହିଲେ । ବିଦ୍ରୋହୀ ପାଇକମାନେ ଚାରିଆଡୁ ତୀର ଓ ଗୁଳି ଚଳାଇଲେ । କିନ୍ତୁ ସିପାହିମାନଙ୍କର କୌଣସି କ୍ଷୟକ୍ଷତି ହୋଇ ନ ଥିଲା ।

ସେପ୍ଟେମ୍ବର ମାସ ୧୫ ତାରିଖ ସକାଳୁ କ୍ୟାପଟେନ୍ କେନେଟ୍ ଦୁଇ କମ୍ପାନୀ ସିପାହି ଧରି ନୂଆଗଡ଼ ଆକ୍ରମଣ କଲେ । କିନ୍ତୁ ସେଠାରେ ଥିବା ପାଇକମାନେ ପୂର୍ବ ରାତିରୁ ପଳାଇ ଯାଇଥିଲେ । ପାଇକମାନଙ୍କ କେତେ ଯୁଦ୍ଧ ସରଞ୍ଜାମ, ଗୋଟିଏ ନୂଆ କମାଣ ଓ ତିନୋଟି ହାତୀ ସରକାରୀ ସିପାହିମାନଙ୍କ ହାତରେ ପଡ଼ିଲା ।

ନୂଆଗଡ଼ଠାରୁ କେନେଟ୍ ତିରଣ ଯିବାପାଇଁ ସ୍ଥିର କରିଥିଲେ । କିନ୍ତୁ ସେସବୁ ଅଞ୍ଚଳରେ ପାଇକମାନେ ବହୁସଂଖ୍ୟାରେ ଥିବା ଖବର ପାଇ ସେଠାକୁ ଗଲେ ନାହିଁ । ନୂଆଗଡ଼ଠାରେ ଡେରା ପକାଇ ରହିଲେ । ୧୮ ତାରିଖ ସୁଦ୍ଧା କେନେଟ୍ ଦୁଇ ଶହ ପାଇକ ସେନାଙ୍କୁ ଧରିବାରେ ସଫଳ ହୋଇଥିଲେ ।

ସେପ୍ଟେମ୍ବର ମାସ ୧୯ ତାରିଖରେ ପାଇକମାନଙ୍କ ସହ କେନେଟ୍‌ଙ୍କର ପୁଣି ସଂଘର୍ଷ ହେଲା । ପ୍ରାୟ ଦୁଇ ହଜାରରୁ ଊର୍ଦ୍ଧ୍ୱ ପାଇକ ହାତୀ, ଘୋଡ଼ା ପ୍ରଭୃତି ଧରି କେନେଟ୍‌ଙ୍କ ସୈନ୍ୟଙ୍କ ସହିତ ଯୁଦ୍ଧ କଲେ । କିନ୍ତୁ ସରକାରୀ ସେନାଙ୍କ ତୋପମାଡ଼ର ସମ୍ମୁଖୀନ ହୋଇ ନ ପାରି ଛତ୍ରଭଙ୍ଗ ଦେଲେ । ଶେଷରେ ରାଜା ମଧୁସୂଦନ କ୍ଷେଣ୍ଟ କେନେଟ୍‌ଙ୍କ ପାଖେ ଆତ୍ମସମର୍ପଣ କଲେ । ସେ ଇଂରେଜ ସେନାଧ୍ୟକ୍ଷଙ୍କ ପ୍ରିୟପାତ୍ର ହେବାପାଇଁ ବିଦ୍ରୋହୀ ପାଇକ ସରଦାର, ଯଥା – ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଯୋଶୀ ଓ ସେମାନଙ୍କର ଅନୁଗତମାନଙ୍କୁ ଧରାଇ ଦେବାରେ ସାହାଯ୍ୟ କଲେ । ରାଜାଙ୍କ ସହିତ ଦୁଇ ଜଣ ପାଇକ ସରଦାରଙ୍କୁ ସାମରିକ ସୁରକ୍ଷାରେ କଟକ ନିଆଯାଇ ସେମାନଙ୍କୁ ବାରବାଟୀ ଦୁର୍ଗରେ ରଖାଗଲା ।

**ବାଲେଶ୍ୱର ବିଦ୍ରୋହ** - ସୁଦୂର ବାଲେଶ୍ୱରରେ ମଧ୍ୟ ବିଦ୍ରୋହର ସୂତ୍ରପାତ ହୋଇଥିଲା । ଏହାର ନେତୃତ୍ୱ ନେଇଥିଲେ ଧେନାର ଜମିଦାର ଜଗନ୍ନାଥ ପ୍ରହରାଜ ଓ ଜାମକୁଣ୍ଡାର ଜମିଦାର ମୁକୁନ୍ଦରାମ । ଦେଓ୍ୱାନ କୃଷ୍ଣଚନ୍ଦ୍ର ଭ୍ରମରବରଙ୍କ ପାଖକୁ ଏମାନେ ଦେଇଥିବା ପତ୍ର ବାଟରେ ସରକାର ଜବତ କରିଥିଲେ । ପତ୍ରବାହକଙ୍କୁ ପଚାରାଓଚରା କରିବାରୁ ସେମାନେ ସବୁ ମାନି ଯାଇଥିଲେ ।

ନବମ ପରିଚ୍ଛେଦ

# ପୁରସ୍କାର ଘୋଷଣା, ଗିରଫ ଓ ଆତ୍ମସମର୍ପଣ

ବ୍ରିଟିଶ ସେନାଧ୍ୟକ୍ଷ ଲି. ଫେଭ୍ରେ ବିଦ୍ରୋହର କେନ୍ଦ୍ରବିନ୍ଦୁ ଜଗବନ୍ଧୁଙ୍କୁ ଧରିବାପାଇଁ ଖୋରଧା, ଦାଜପୁର, ପିପିଲି ପ୍ରଭୃତି ସ୍ଥାନରେ ପ୍ରବଳ ଉଦ୍ୟମ ଚଳାଇଥିଲେ ମଧ ବ୍ୟର୍ଥ ମନୋରଥ ହେଲେ । ଏପରିକି ଜଗବନ୍ଧୁ ଓ ତାଙ୍କର ସହଯୋଗୀମାନଙ୍କ ରହଣି ବା ବ୍ରିଟିଶ ବିରୋଧୀ କାର୍ଯ୍ୟକଳାପ ବିଷୟରେ ଖବର ମିଳିବା କଷ୍ଟସାଧ ହୋଇପଡ଼ିଲା । ବିଦ୍ରୋହୀ ନେତାମାନଙ୍କ ସମ୍ପର୍କରେ ସମସ୍ତ ତଥ୍ୟ ସଂଗ୍ରହ କରିବାପାଇଁ ଶେଷରେ ପୁରସ୍କାର ଘୋଷଣା କରିବାକୁ ସରକାର ବାଧ ହେଲେ । ଏହି ଘୋଷଣା ପତ୍ର ସର୍ବସାଧାରଣଙ୍କ ଗୋଚରାର୍ଥେ ଜନସମାଗମ ସ୍ଥାନମାନଙ୍କରେ ଦିଆଯିବାର ବ୍ୟବସ୍ଥା ହେଲା । ବିଦ୍ରୋହୀ ନେତାମାନଙ୍କୁ ଧରାଇଦେଲେ କେତେ ପୁରସ୍କାର ମିଳିବ ତା'ର ତାଲିକା ତଳେ ଦିଆଗଲା -

| ନାମ | | ପୁରସ୍କାର ଅର୍ଥର ପରିମାଣ |
|---|---|---|
| ୧. ଜଗବନ୍ଧୁ ବିଦ୍ୟାଧର | — | ଟ ୫୦୦୦ |
| ୨. କୃଷ୍ଣଚନ୍ଦ୍ର ଭ୍ରମରବର | — | ଟ ୨୦୦୦ |
| ୩. ଜଗବନ୍ଧୁ ସାମନ୍ତରା | — | ଟ ୧୦୦୦ |
| ୪. ହାଇଦର ଅଲ୍ଲୀ | — | ଟ ୧୦୦୦ |
| ୫. ଧରମୁ ହରିଚନ୍ଦନ | — | ଟ ୧୦୦୦ |
| ୬. ରାମଚନ୍ଦ୍ର ସାମନ୍ତସିଂହାର | — | ଟ ୧୦୦୦ |
| ୭. ଆଦିକନ୍ଦ ବିଦ୍ୟାଧର | — | ଟ ୧୦୦୦ |
| ୮. ଉପେନ୍ଦ୍ର ଜଗଦେବ | — | ଟ ୧୦୦୦ |
| ୯. ଧରମୁ ସୁବୁଦ୍ଧି | — | ଟ ୧୦୦୦ |
| ୧୦. ବିଷ୍ଣୁ ହରିଚନ୍ଦନ | — | ଟ ୧୦୦୦ |
| ୧୧. କରୁଣାକର ପରମଗୁରୁ | — | ଟ ୧୦୦୦ |
| ୧୨. ଗଗନ ସିଂହ | — | ଟ ୧୦୦୦ |
| ୧୩. ନୀଳାଦ୍ରି ସାମନ୍ତରା | — | ଟ ୧୦୦୦ |

| | | |
|---|---|---|
| ୧୪. ହରି ମାନସିଂହ | — | ଟ ୧୦୦୦ |
| ୧୫. ପୁରୁଷୋତ୍ତମ ମାନସିଂହ | — | ଟ ୧୦୦୦ |
| ୧୬. ଅନ୍ତର୍ଯାମୀ ପାହାଡ଼ସିଂହ | — | ଟ ୧୦୦୦ |

ଉପରୋକ୍ତ ସମସ୍ତ ବିଦ୍ରୋହୀ ସରଦାରଙ୍କୁ ବ୍ରିଟିଶ ସରକାର ରାଜଦ୍ରୋହରେ ଅଭିଯୁକ୍ତ କରିଥିଲେ । ଆଉ କେତେକ ପାଇକ ସରଦାର ବ୍ରିଟିଶ ଅଫିସ୍, କଚେରି ପ୍ରଭୃତି ଲୁଟପାଟ କରୁଥିଲେ; ସେମାନଙ୍କୁ ଡକାୟତଭାବେ ଅଭିଯୁକ୍ତ କରାଯାଇଥିଲା । ବ୍ରିଟିଶ ସରକାରଙ୍କୁ ସମର୍ଥନ କରୁଥିବା ବ୍ୟକ୍ତିଙ୍କୁ ହତ୍ୟା ବା ମାରଧର କରିଥିବା ବ୍ୟକ୍ତିମାନଙ୍କୁ ନରହତ୍ୟା ଅଭିଯୋଗରେ ଅଭିଯୁକ୍ତ କରାଇବାପାଇଁ ଉଦ୍ୟମ ହୋଇଥିଲା ।

**ପିଣ୍ଡିକି ବାହୁବଳେନ୍ଦ୍ରଙ୍କୁ ଗୁଳିକରି ହତ୍ୟା** — ପିଣ୍ଡିକି ବାହୁବଳେନ୍ଦ୍ର ଦାରୁଠେଙ୍ଗଗଡ଼ ନିବାସୀ ଥିଲେ । ସେ ଗଜପତି ମହାରାଜାଙ୍କଠାରୁ ଦଳେଇ ପଦ ଲାଭ କରି ନିଷ୍କର ଜମି ଓ ମୀନହା ଡିହ ଉପଭୋଗ କରୁଥିଲେ । ସେ ବ୍ରିଟିଶ ସରକାରଙ୍କୁ ନିକାଲିଦେବାପାଇଁ ଏକ ଯୁବବାହିନୀ ଗଢ଼ିଥିଲେ । ଏହି ଯୁବବାହିନୀ ଖଜଣାଖାନା ଲୁଟ, ଥାନାପୋଡ଼ି ପ୍ରଭୃତି ବ୍ରିଟିଶ ବିରୋଧୀ କାର୍ଯ୍ୟ ଚଳାଇଥିଲେ । ୧୮୧୨ରେ ବ୍ରିଟିଶ ସରକାର ପିଣ୍ଡିକି ଓ ତାଙ୍କର ଅନୁଚରମାନଙ୍କ ବିରୋଧରେ ଗୃହଦାହ, ଲୁଟତରାଜ ପ୍ରଭୃତି ମାମଲା ରୁଜୁ କଲେ । ତାଙ୍କର ବିଚାର ହେଲା ଓ ତାଙ୍କୁ ଦ୍ୱୀପାନ୍ତର ଦଣ୍ଡ ମିଳିଲା । କିନ୍ତୁ ବାଟରେ ଯିବାବେଳେ ସେ ପ୍ରହରୀମାନଙ୍କ ଆଖିରେ ଧୂଳି ପକାଇ ଖସିଗଲେ । ତାଙ୍କୁ ବ୍ରିଟିଶ ସରକାର ଯେତେ ଉଦ୍ୟମ କଲେ ମଧ ଧରିପାରିଲେ ନାହିଁ ।

୧୮୧୭ ମାର୍ଚ୍ଚ ମାସରେ ବକ୍ସି ଜଗବନ୍ଧୁ ବ୍ରିଟିଶ ବିରୋଧୀ ସଂଗ୍ରାମ ଆରମ୍ଭ କଲେ । ପିଣ୍ଡିକି ସହଯୋଗୀ ସାଧୁଚରଣ ମଙ୍ଗରାଜ ଓ ବିଷ୍ଣୁ ପାଇକରାୟଙ୍କ ସହିତ ସେଥିରେ ଯୋଗ ଦେଲେ । ବକ୍ସିଙ୍କର ଯେଉଁ ପନ୍ଦର ଜଣ ବିଶ୍ୱସ୍ତ ସରଦାର ଥିଲେ, ପିଣ୍ଡିକି ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କର ସ୍ଥାନ ଦେବାନ କୃଷ୍ଣଚନ୍ଦ୍ର ଭ୍ରମରବରଙ୍କ ତଳକୁ ଥିଲା । ପଟିଆର ଚନ୍ଦ୍ରଶେଖରପୁର ନିକଟବର୍ତ୍ତୀ ଶିଖରଚଣ୍ଡୀ ମୁଣ୍ଡିଆ ତାଙ୍କର କାର୍ଯ୍ୟସ୍ଥଳୀ ଥିଲା । ସେ ବ୍ରିଟିଶ ଖଜଣାଖାନା ପ୍ରଭୃତି ଲୁଟତରାଜ କରି ଆଖି ପିଛୁଳାକେ ଅନ୍ତର୍ଦ୍ଧାନ ହୋଇଯାଉଥିଲେ । ସେ ସରକାରଙ୍କ ମୁଣ୍ଡବ୍ୟଥାର କାରଣ ହୋଇପଡ଼ିଲେ । ଶେଷରେ ବ୍ରିଟିଶ ସରକାର ତାଙ୍କୁ ଧରେଇ ଦେବାପାଇଁ ୧୦୦୦ଟଙ୍କା ପୁରସ୍କାର ଘୋଷଣା କଲେ । ତଥାପି ପିଣ୍ଡିକି ଧରାପଡ଼ିଲେ ନାହିଁ ।

ବାହୁବଳେନ୍ଦ୍ରଙ୍କୁ ଧରିବାପାଇଁ ବହୁବାର ତାଙ୍କ ଘର ଉପରେ ଚଢ଼ାଉ ହେଲା । ଗ୍ରାମ ସାରା ପୋଲିସମାନଙ୍କର ମାର୍ଚ୍ଚିଙ୍ଗ ହେଲା । ଥରେ ରାତ୍ରିର ବିଳମ୍ବିତ ପ୍ରହରରେ

ବାହୁବଳେନ୍ଦ୍ର ଘରେ ଥିବା ଖବରପାଇ ତାଙ୍କ ଘରକୁ ପୋଲିସ ଘେରାଉ କଲେ । ପିଣ୍ଡିକି ଖସିଗଲେ; କିନ୍ତୁ ତାଙ୍କ ସହଯୋଗୀ ସାଧୁଚରଣ ମଙ୍ଗରାଜ, ବିଷ୍ଣୁ ପାଇକରା ଓ ଧନୀ ଜେନା ଧରା ହେଲେ ।

ପିଣ୍ଡିକି ବାହୁବଳେନ୍ଦ୍ରଙ୍କୁ ଧରିବାପାଇଁ ସରକାର ପୁନର୍ବାର ୧୦୦୦ ଟଙ୍କା ପୁରସ୍କାର ଘୋଷଣା କଲେ । ଶେଷରେ ସରକାର ପିଣ୍ଡିକିଙ୍କୁ ଧରିବାରେ ସଫଳ ହେଲେ ।

ମଳିପଡ଼ାର ଜମିଦାର ଥିଲେ ଧ୍ରୁବଜୟ ହରିଚନ୍ଦନ । ପିଣ୍ଡିକି ବାହୁବଳେନ୍ଦ୍ରଙ୍କ ସହିତ ତାଙ୍କର ବନ୍ଧୁତା ଥିଲା । ବେଳେ ବେଳେ ପିଣ୍ଡିକି ମଳିପଡ଼ା ଯାଇ ବନ୍ଧୁଙ୍କ ଘରେ ରହୁଥିଲେ । ତାଙ୍କଠାରୁ ସାମୟିକ ସାହାଯ୍ୟ ମଧ୍ୟ ପାଉଥିଲେ ।

ଗୁପ୍ତଚରଙ୍କଠାରୁ ପିଣ୍ଡିକିଙ୍କର ମଳିପଡ଼ା ଜମିଦାରଙ୍କ ସଙ୍ଗେ ବନ୍ଧୁତା ଥିବା କଥା ବ୍ରିଟିଶ କର୍ତ୍ତୃପକ୍ଷ ଜାଣି ମଳିପଡ଼ା ଜମିଦାର ଧ୍ରୁବଜୟ ହରିଚନ୍ଦନଙ୍କ ଉପରେ ଚାପ ପକାଇଲେ । ସେ ଜାଣିଶୁଣି ପିଣ୍ଡିକିଙ୍କୁ ଧରାଇ ଦେଉ ନାହାନ୍ତି ବୋଲି ସେମାନେ ସ୍ପଷ୍ଟ ଅଭିଯୋଗ କଲେ । ଏକ ହଜାର ଟଙ୍କା ପୁରସ୍କାର ବ୍ୟତୀତ, ଅଧିକ ଜାଗିରି ଜମି, ରାଜପଦ ଓ ତମ୍ବାପାତିଆ ସନନ୍ଦ ଦେବାର ଲୋଭ ବି ଦେଖାଇଲେ । ଶେଷରେ ବାହୁବଳେନ୍ଦ୍ରଙ୍କୁ ଧରାଇଦେବାକୁ ମଳିପଡ଼ା ଜମିଦାର ସମ୍ମତ ହେଲେ । ଧରାଇ ଦେବାପାଇଁ ହୀନ ଉପାୟ ମଧ୍ୟ ଅବଲମ୍ବନ କଲେ ।

ଦିନେ ମଳିପଡ଼ା ଜମିଦାର ବନ୍ଧୁ ପିଣ୍ଡିକିଙ୍କୁ ନିଜ ଘରକୁ ନିମନ୍ତ୍ରଣ କଲେ । ଦିନବେଳା ମଳିପଡ଼ା ଆସିବା ନିରାପଦ ନ ଥିଲା – ସେଥିପାଇଁ ରାତିରେ ପିଣ୍ଡିକି ସାଥୀଙ୍କୁ ଧରି ବନ୍ଧୁଙ୍କ ଘରକୁ ଆସିଲେ । ଭୋଜନରେ ଦୁଦୁରା ମିଶ୍ରିତ ଭାଙ୍ଗ ପରଷାଗଲା । ପିଣ୍ଡିକି ଓ ତାଙ୍କ ସାଥୀମାନେ ନିଶାରେ ଘାରି ହୋଇ ଅଜ୍ଞାନ ଅବସ୍ଥାରେ ଥିଲେ । ପୂର୍ବରୁ ସେନାଧ୍ୟକ୍ଷ ଥୋମାସ୍‌ଙ୍କୁ ଖବର ଦିଆଯାଇଥିଲା । ସେ ଦଳେ ସୈନ୍ୟଙ୍କ ସହ ମଳିପଡ଼ା ଜଙ୍ଗଲରେ ଲୁଚି ରହିଥିଲେ । ଗୁପ୍ତ ସଙ୍କେତ ପାଇ ଥୋମାସ୍‌ଙ୍କ ସୈନ୍ୟଦଳ ଜମିଦାରଙ୍କ ଘର ଘେରାଉ କଲେ । ଶୋଇଥିବା ଅବସ୍ଥାରେ ପିଣ୍ଡିକି ଧରାପଡ଼ିଲେ । ବନ୍ଧୁଙ୍କର ବିଶ୍ୱାସଘାତକତା ତାଙ୍କ ଆଖି ଆଗରେ ସ୍ପଷ୍ଟ ହୋଇଗଲା । ତାଙ୍କ ପାଟିରୁ ବାହାରି ପଡ଼ିଥିଲା – ପଦିଏ କଥା – ''ଚିରକାଳ ତମକୁ ଅଣ୍ଟିବ ନାହିଁ ।''

ବାହୁବଳେନ୍ଦ୍ରଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖାଗଲା । ତାଙ୍କ ଗୋଡ଼ରେ ଶିକୁଳି ପଡ଼ିଲା । ହାତରେ ବେଡ଼ି ମଧ୍ୟ ଦିଆଗଲା । ବନ୍ଦୀ ଅବସ୍ଥାରେ ଅସ୍ତ୍ର ଶସ୍ତ୍ର ସଫା କରିବା ତାଙ୍କର କାମ ହେଲା । ଦିନେ ସଫା କରୁଥିବା ତରବାରି ମଧ୍ୟରୁ ଗୋଟିଏ ତରବାରି ସାହାଯ୍ୟରେ ବେଡ଼ିରୁ ମୁକ୍ତ ହେଲେ । ଗୋଟିଏ ମାଠିଆ ସାହାଯ୍ୟରେ

କାଠଯୋଡ଼ି ନଦୀ ପାର ହୋଇ ବାରଙ୍ଗ ପର୍ଯ୍ୟନ୍ତ ପଳାଇଗଲେ । ସରକାରୀ ରକ୍ଷୀମାନେ ତାଙ୍କର ପଶ୍ଚାଦ୍‌ଧାବନ କରୁଥାନ୍ତି । ପଶ୍ଚାଦ୍ ଭାଗରୁ ଘନ ଘନ ଗୁଳିମାଡ଼ ବି ହେଉଥାଏ । ବାହୁବଳେନ୍ଦ୍ର ସେଥିରୁ ଚାରିଗୁଳା ପର୍ଯ୍ୟନ୍ତ ହାତ ମୁଠାରେ ଧରିନେଲେ । ଶେଷରେ ଗୁଳି ମାଡ଼ରେ ଟଳିପଡ଼ିଲେ ।

୧୯୧୩ ମସିହାରେ ରଚିତ 'ଖୋରଧା ଦର୍ପଣ'ର ତଥ୍ୟ ଅନୁଯାୟୀ ବାହୁବଳେନ୍ଦ୍ରଙ୍କୁ ଜୀବନରେ ମାରିଦେବାପାଇଁ ସରକାରୀ ନିର୍ଦ୍ଦେଶ ନ ଥିଲା । ମରିଯିବା ପରେ ବ୍ରିଟିଶ କର୍ତ୍ତୃପକ୍ଷ ମଧ୍ୟ ଦୁଃଖ ପ୍ରକାଶ କରିଥିଲେ ।

କିନ୍ତୁ 'ଖୋରଧା ଦର୍ପଣ' ଲେଖକ ଦିଗମ୍ବର ହରିଚନ୍ଦନଙ୍କ ମତରେ ଏହା ଏକ ଛଳନା ମାତ୍ର ଥିଲା ।

**କୃଷ୍ଣଚନ୍ଦ୍ର ଭ୍ରମରବର –** ବକ୍ସି ଜଗବନ୍ଧୁଙ୍କ ଯେଉଁ ୧୫ ଜଣ ବିଶ୍ୱସ୍ତ ସରଦାର ଥିଲେ, ସେମାନଙ୍କ ମଧ୍ୟରେ କୃଷ୍ଣଚନ୍ଦ୍ର ଅଗ୍ରଗଣ୍ୟ ଥିଲେ । ସେ ବକ୍ସିଙ୍କ ପ୍ରଧାନ ପରାମର୍ଶଦାତା ଥିଲେ । ସେ ଓ ବକ୍ସି ଅନ୍ୟାନ୍ୟ ସରଦାରମାନଙ୍କ ସହ ଗୁପ୍ତ ସ୍ଥାନମାନଙ୍କରେ ମିଳିତ ହୋଇ ଭବିଷ୍ୟଦ୍ ଯୋଜନାମାନ କରୁଥିଲେ । ବକ୍ସିଙ୍କ ଭଳି ସେ ବଡ଼ଗଡ଼ର ଦଳବେହେରା ପଦ୍ମନାଭ ଛୋଟରାୟ ଓ ଜାମୁକୁଳର ଦଳବେହେରାଙ୍କ ନିକଟକୁ ପତ୍ର ପ୍ରେରଣ କରିଥିଲେ । ସେଥିରେ ସେ ମନୋବଳ ରଖିବାକୁ ଓ ବିଦ୍ରୋହ ଚାଲୁ ରଖିବାକୁ ପରାମର୍ଶ ଦେଇଥିଲେ । ତାଙ୍କୁ ଗିରଫ କରିବାକୁ ସରକାର ଟ ୨୦୦୦ ପୁରସ୍କାର ଘୋଷଣା କରିଥିଲେ; ମାତ୍ର ତାଙ୍କୁ ଧରିବା ସରକାରଙ୍କ ସାଧ୍ୟାତୀତ ହୋଇ ପଡ଼ିଥିଲା । ସେ ବକ୍ସିଙ୍କ ସହିତ ଛାଇପରି ରହୁଥିଲେ ।

**ଭାଗୁହରିଚନ୍ଦନ ଓ ମାଖନ ସିଂହ ଧରାପଡ଼ିଲେ –** ଖୋରଧାରୁ ଦଳେ ବ୍ରିଟିଶ ସେନାଦଳ ଗଙ୍ଗପଡ଼ାରେ ପହଞ୍ଚି ରାତିରେ ଭାଗୁହରିଚନ୍ଦନ ଓ ମାଖନ ସିଂହଙ୍କ ଘର ଉପରେ ଚଢ଼ାଉ କଲେ । ଏ ଦୁହେଁ ଲେଫଟନାଣ୍ଟ ଫେରିସ୍‌ଙ୍କ ହତ୍ୟାକାଣ୍ଡରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ।

**ରଥୀ ସାମନ୍ତସିଂହାର ଧରାପଡ଼ିଲେ –** ରଥୀ ସାମନ୍ତସିଂହାର ଛତ୍ରଗଡ଼ର ବିଷୋୟୀ ଥିଲେ । ୧୮୧୮ ଫେବୃୟାରୀ ମାସରେ ସେ ତିନି ଶହ ପାଇକ ନେଇ କେଶପୁର ଆକ୍ରମଣ କଲେ । ସେଠା ବ୍ରିଟିଶ ସମର୍ଥକ କଳାପାହାଡ଼ ଆଗରୁ କୌଣସି ସୂତ୍ରରୁ ଖବର ପାଇ ଗାଁରୁ ପଳାଇଥିଲେ । ପାଇକମାନେ ତାଙ୍କ ଘର ଲୁଟିନେଲେ । ଲେଫଟନାଣ୍ଟ ବେଲ୍ ରଥୀଙ୍କୁ ଧରିବାକୁ କେଶପୁର ଗଲେ । କିନ୍ତୁ ରଥୀ ତାଙ୍କ ଦଳବଳ ସହ ଚିଲିକା ପାରହୋଇ ପାରିକୁଦ ପଳାଇଗଲେ ।

ରଥୀଙ୍କୁ ଧରିବାପାଇଁ ସରକାର ଟ୧୦୦୦ ପୁରସ୍କାର ଘୋଷଣା କଲେ ।

୧୮୧୭ ଅଗଷ୍ଟ ମାସ ଶେଷ ସପ୍ତାହରେ ଛତ୍ରଗଡ଼ର ଦଳବେହେରାଙ୍କ ଭାଇ ଗୌରାଙ୍ଗ ପଟ୍ଟନାୟକ ଲେଫଟନାଣ୍ଟ ବେଲ୍‌ଙ୍କୁ ରଥୀ ସାମନ୍ତସିଂହାର ଓ ତାଙ୍କ ଦଳର କେତେଜଣ ଲୋକ ଖଲିକୋଟ ଜମିଦାରୀର ଛତ୍ରଗଡ଼ ନିକଟରେ ବୁଢ଼ି ଗ୍ରାମରେ ରହୁଥିବାର ଖବର ଦେଲେ । ବେଲ୍ ବାଣପୁରରୁ କେତେକ ସୈନ୍ୟ ବୁଢ଼ି ପଠାଇଲେ । ନିଜେ ଗୌରାଙ୍ଗ ପଟ୍ଟନାୟକ ଏହି ସୈନ୍ୟ ଦଳକୁ ବାଟ କଢ଼ାଇ ନେଇ ସେଠାରେ ହାଜର କରାଇଲେ ।

ସୈନ୍ୟଦଳର ଏହି ଅଚାନକ ଆକ୍ରମଣରେ ରଥୀ ସାମନ୍ତସିଂହାର ଧରାପଡ଼ିଲେ । ତାଙ୍କ ନିକଟରେ ଗୋଟିଏ ପୁରୁଣା ନଳୀ, ଗୋଟିଏ ଖଣ୍ଡା, ଗୋଟିଏ ବଡ଼ ଛୁରା ଓ ଗୁଳିଗୁଳା ଥିଲା । ତାହାକୁ ସୈନ୍ୟଦଳ ଜବତ୍ କଲେ । ରଥୀଙ୍କର ବାପା, ମା' ଓ ଭାଇ ଧରାପଡ଼ିଲେ । ରଥୀଙ୍କର ଦ୍ୱିତୀୟପୁତ୍ର ସତ୍ୟବାଦୀ ମଧ୍ୟ ଧରାପଡ଼ିଲେ । ରଥୀଙ୍କର ଚାକର ଲୋକନାଥ ମଧ୍ୟ ଧରା ଦେଲେ । ପରମାନନ୍ଦ ବିଷୋୟୀ ମଧ୍ୟ ଧରା ଦେଲେ । ତାଙ୍କ ଘରେ ଖଣ୍ଡା, ଧନୁ, ଫାର୍ସା ପ୍ରଭୃତି ଥିଲା । ସେସବୁ ମଧ୍ୟ ଜବଦ୍ ହେଲା ।

ରଥୀ ଓ ତାଙ୍କ ସାଙ୍ଗେ ଥିବା ଚାରି ଜଣଙ୍କୁ ଖୋରଧା ଚାଲାଣ କରାଗଲା ।

**କରୁଣାକର ପରମଗୁରୁ ଧରା ହେଲେ** – ଗୋପ ଅଞ୍ଚଳରେ ରହୁଥିଲେ କରୁଣାକର ପରମଗୁରୁ । ସେ ଦଳେ ପାଇକଙ୍କୁ ନେଇ ଗୋପ ଥାନା ଆକ୍ରମଣ କରିଥିଲେ । ଥାନା ପୋଡ଼ି ଦେଇଥିଲେ । ଗୋପରେ ପାଇକଙ୍କ ଆକ୍ରମଣ ତୀବ୍ର ହୋଇଉଠିଥିଲା ।

କରୁଣାକର ଇଂରେଜମାନଙ୍କ ହାତରୁ ରକ୍ଷା ପାଇବାପାଇଁ ଖଣ୍ଡଗିରି, ଭାଟପଡ଼ା ପ୍ରଭୃତି ଅଞ୍ଚଳରେ ଲୁଚି ରହିଥିଲେ । ଦୀନବନ୍ଧୁ ସାନ୍ତରା ଓ ଅରାଙ୍ଗ ଦଳବେହେରାଙ୍କୁ ତାଙ୍କୁ ଧରାଇଦେବାରେ ସାହାଯ୍ୟ କରିଥିଲେ । ତାଙ୍କୁ ଯାବଜ୍ଜୀବନ କାରାଦଣ୍ଡ ହୋଇଥିଲା ।

**ସରଦାର ଚିନ୍ତୁ ଧରାପଡ଼ିଲେ** – ଚିନ୍ତୁ ଜଣେ ବକ୍ସିଙ୍କ ବିଶ୍ୱସ୍ତ ସରଦାର ଥିଲେ । ସେ ବାଳକାଟି ଅଞ୍ଚଳ ନିବାସୀ ଥିଲେ । ସେ ୧୮୧୭ ମସିହା ମଝି ଆଡ଼କୁ ଦଳେ ପାଇକ ନେଇ ଗୋପ ନିକଟବର୍ତ୍ତୀ ଥିବା ବ୍ରିଟିଶ ସମର୍ଥକ ମଧୁସୂଦନ ଦାସଙ୍କ ଘର ଉପରେ ଆକ୍ରମଣ କରିଥିଲେ । ତାଙ୍କ ଘର ଲୁଟି ନେଇଥିଲେ । ତାଙ୍କ ଘରେ ପୂଜା ପାଉଥିବା ଇଷ୍ଟ ଦେବତାଙ୍କୁ ମଧ୍ୟ ନେଇଯାଇଥିଲେ ।

୧୮୧୮ ମସିହା ଅଗଷ୍ଟ ମାସ ୧୯ ତାରିଖରେ କ୍ୟାପଟେନ୍ ଫରେଷ୍ଟର, କ୍ୟାପଟେନ୍ ଲ୍ୟାଟମାନ୍ ଦଳେ ସିପାହିଙ୍କୁ ଧରି ଚିନ୍ତୁଙ୍କ ଗ୍ରାମ ଗଞ୍ଜପଡ଼ା ଆଡ଼କୁ ଅଗ୍ରସର ହେଲେ । କିନ୍ତୁ ଲୋକେ ଚିନ୍ତୁଙ୍କୁ ଆଗୁଆ ଖବର ଦେବାରୁ ସେ ଅନ୍ୟ

ଗ୍ରାମକୁ ଚାଲିଗଲେ । ଚିତ୍ରୁଙ୍କ ଘର ଘେରାଉ କରାଗଲା । ଖାନତଲାସ କରିବାରୁ ମଧୁସୂଦନ ଦାସଙ୍କ ଘରୁ ଲୁଟ ହୋଇଥିବା ଜିନିଷ ମିଳିଲା । ଚିତ୍ରୁଙ୍କ ତିନି ଭାଇଙ୍କୁ ଗିରଫ କରାଗଲା । ଏହି ଗ୍ରାମର ୩୪ ଜଣଙ୍କୁ ଗିରଫ କରି ପିପିଲି ଥାନାକୁ ପଠାଇ ଦିଆଗଲା ।

**ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଯୋଷୀ** — କୁଜଙ୍ଗ ବିଦ୍ରୋହର ମୁଖ୍ୟ ସରଦାର ଥିଲେ ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଯୋଷୀ । ୧୮୧୭ ବିଦ୍ରୋହ ଆରମ୍ଭରେ ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଯୋଷୀ ଜଗବନ୍ଧୁଙ୍କ ସହିତ ସମ୍ପର୍କ ସ୍ଥାପନ କରି କୁଜଙ୍ଗରେ ବିଦ୍ରୋହ ତୀବ୍ରତର କଲେ । ତାଙ୍କର ବିଦ୍ରୋହ ମୁଖ୍ୟତଃ ରାଜବିରୋଧୀ ଥିଲା । ସେମାନେ ହରିଶପୁର ଜମିଦାର ମଧୁସୂଦନ ମଙ୍ଗରାଜଙ୍କ ସହ ମିଶି ବିଦ୍ରୋହ କଲେ । ସେମାନେ ବ୍ରିଟିଶ ସୈନ୍ୟ ଆସିବା ପଥରେ ଅବରୋଧ ସୃଷ୍ଟି କରିଥିଲେ । ବିଶ୍ୱାସଘାତକମାନଙ୍କୁ ମଧ୍ୟ ଭୟ ପ୍ରଦର୍ଶନ କରୁଥିଲେ । ସେମାନଙ୍କ ବିଦ୍ରୋହ କୁଜଙ୍ଗ ରାଜା ମଧୁସୂଦନ ଷେଣ୍ଢଙ୍କୁ ବିଦ୍ରୋହରେ ଝାସ ଦେବାପାଇଁ ବାଧ୍ୟ କରିଥିଲା । ସେମାନଙ୍କ ନେତୃତ୍ୱରେ କୁଜଙ୍ଗ ବିଦ୍ରୋହ ଏକ ଗଣ ଆନ୍ଦୋଳନର ପରିଣତ ହେଲା ।

ଶେଷରେ କୁଜଙ୍ଗ ରାଜା ମଧୁସୂଦନ ଷେଣ୍ଢ କ୍ୟାପଟେନ୍ କେନେଟ୍‌ଙ୍କ ପାଖରେ ଆତ୍ମସମର୍ପଣ କଲେ । ଏହାପରେ ସେ ଏହି ଦୁଇ ଜଣ ବିଦ୍ରୋହୀ ସରଦାରଙ୍କ ସମ୍ବନ୍ଧରେ ସବୁ ଖବର କେନେଟ୍‌ଙ୍କୁ ଦେଲେ । କେନେଟ୍ ଏହା ଫଳରେ ଦୁଇ ଜଣ ମୁଖ୍ୟ ସରଦାରଙ୍କୁ ବନ୍ଦୀ କଲେ । ରାଜାଙ୍କ ସହିତ ଏହି ଦୁଇ ଜଣଙ୍କୁ କେନେଟ୍ କଟକ ପଠାଇଦେଲେ ।

**ଆତ୍ମସମର୍ପଣ** — କୁଜଙ୍ଗ ରାଜା ମଧୁସୂଦନ ଷେଣ୍ଢ ଇଂରେଜ ବିରୋଧୀ ସଂଗ୍ରାମରେ ଯୋଗ ଦେଇଥିଲେ । କିନ୍ତୁ ଶେଷରେ ଆତ୍ମସମର୍ପଣ କଲେ । ରାଜାଙ୍କୁ ପ୍ରଥମେ କଡ଼ା ପ୍ରହରାରେ ବାରବାଟୀ ଦୁର୍ଗରେ ରଖାଗଲା; ପରେ ସହରରେ ଏକ ଭଡ଼ା ଘରେ ତାଙ୍କୁ କଡ଼ା ପ୍ରହରାରେ ରଖାଗଲା ।

**ଦୀନବନ୍ଧୁ ସାନ୍ତରା ଓ ଅରାଙ୍ଗ ଦଳବେହେରା** — ଆଉ ଜଣେ ଜଗବନ୍ଧୁଙ୍କର ମୁଖ୍ୟ ସହଯୋଗୀ ହେଲେ ଦୀନବନ୍ଧୁ ସାନ୍ତରା । ତାଙ୍କ ଅଧୀନରେ ଶହେ ଜଣ ପାଇକ ଥିଲେ । ଘୁମୁସରର ଶହେ ପାଇକ ମଧ୍ୟ ଦରମା ପାଇ ରହିଥିଲେ । ଏହି ଦୁଇ ଶହ ପାଇକ ନେଇ ସେ ବାଣପୁର ଅଞ୍ଚଳରେ ବିଦ୍ରୋହକୁ ତୀବ୍ର କରିଥିଲେ । ସାନ୍ତରାଙ୍କ ପାଇକମାନେ ଭାଟପଡ଼ା ନିକଟସ୍ଥ ଗ୍ରାମମାନଙ୍କରୁ ରସଦ ସଂଗ୍ରହ କରୁଥିଲେ । ଦୀନବନ୍ଧୁ କେତେବେଳେ ଅରାଙ୍ଗ (ଖୋରଧା ପାଖ) ବା କେତେବେଳେ ନୟାଗଡ଼

ସୀମାରେ ଲୁଚି ରହୁଥିଲେ । ସେ ତାଙ୍କ ଦଳବଳ ନେଇ ଅରାଙ୍ଗରେ ଥିବା ସମୟରେ କ୍ୟାପଟେନ୍ ବେଲ ତାଙ୍କୁ ଧରିବାକୁ ଉଦ୍ୟମ କରିଥିଲେ । ମାତ୍ର ଦୀନବନ୍ଧୁ ଖସି ପଳାଇଲେ । ୧୮୧୮ ଅକ୍ଟୋବର ମାସରେ ଦୀନବନ୍ଧୁଙ୍କୁ ଧରିବାପାଇଁ ବେଲ୍ ଉଦ୍ୟମ କଲେ । ସେତେବେଳେ ଦୀନବନ୍ଧୁ ଭାଟପଡ଼ାରେ ରହୁଥିଲେ । ବେଲ୍ ୫୦ ଜଣ ଅଶ୍ୱାରୋହୀ ନେଇ ଦୀନବନ୍ଧୁଙ୍କୁ ଧରିବାକୁ ବାହାରିଲେ । ମାତ୍ର ସେ ଆଗରୁ ଖବରପାଇ ପଳାୟନ କଲେ । ଦୀନବନ୍ଧୁଙ୍କ ରହୁଥିବା ଗ୍ରାମ ପୁଟି ଘରକୁ ବେଲ୍ ପୋଡ଼ିଦେଲେ ।

୧୮୧୮ ନଭେମ୍ବର ମାସ ୫ ତାରିଖରେ ଭାଟପଡ଼ାଠାରେ ଦୀନବନ୍ଧୁ ସାନ୍ତରା ଆତ୍ମସମର୍ପଣ କଲେ । ଅରାଙ୍ଗ ଦଳବେହେରା ତା' ପରଦିନ ଅର୍ଥାତ୍ ୬ ତାରିଖରେ ୱାଟସନ୍‌ଙ୍କ ପାଖେ ଆତ୍ମସମର୍ପଣ କଲେ ।

**ଦାମ ସୁବୁଦ୍ଧି** – ଖୋରଧା ଅଞ୍ଚଳର ସିକୋ ଗ୍ରାମର ଦାମ ସୁବୁଦ୍ଧି ବକ୍‌ସିଙ୍କର ଅନ୍ୟତମ ସହଯୋଗୀ ଥିଲେ । ସେ ବିଦ୍ରୋହର ପ୍ରଥମ ଅବସ୍ଥାରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ସମ୍ବଲପୁର ରାଣୀ ମୁକ୍ତାଦେଈ ଖୋରଧାରୁ ସମ୍ବଲପୁର ଯିବା ବେଳେ ଦାମ ସୁବୁଦ୍ଧିଙ୍କ ନେତୃତ୍ୱରେ ବିଦ୍ରୋହୀ ପାଇକମାନେ ତାଙ୍କୁ ଆକ୍ରମଣ କରିଥିଲେ । ତାଙ୍କ ଜିନିଷପତ୍ର ଲୁଟି ନେଇଥିଲେ ।

୧୮୧୭ ଅକ୍ଟୋବର ଆଡ଼କୁ ଦାମ ଜଗବନ୍ଧୁଙ୍କଠାରୁ ଅଲଗା ହୋଇଯାଇଥିଲେ । ସିକୋରେ କୁଟୁମ୍ବ ଧରି ରହିବା ନିରାପଦ ମନେ ନ କରି ସେ ଗଡ଼ଜାତ ଅଞ୍ଚଳରେ ଯାଇ ରହିଲେ । ପ୍ରଥମେ ସେ ତାଙ୍କ ପରିବାର ଧରି ଦଶପଲ୍ଲାରେ ଚାରି ମାସ ରହିଲେ । ସେଠାରୁ ସେ ବୌଦ ଗଲେ ଓ ସେଠାରେ ଚାରି ମାସ ରହିଲେ । ବୌଦରୁ ସେ ଆଠମଲ୍ଲିକ ଗଲେ ଓ ସେଠାରେ ତିନି ମାସ ରହିଲେ ।

ବ୍ରିଟିଶ ସରକାର ଦାମ ସୁବୁଦ୍ଧିଙ୍କୁ କ୍ଷମାଦେବେ ବୋଲି ଆଠମଲ୍ଲିକ ରାଜା ନିର୍ଭର ପ୍ରତିଶ୍ରୁତି ଦେବାରୁ ଦାମ ସୁବୁଦ୍ଧି ଆତ୍ମସମର୍ପଣ କରିବାକୁ ରାଜି ହେଲେ । ବ୍ରିଟିଶ କମିସନର ରଫସେଡ୍‌ଜ ମଧ୍ୟ ତାଙ୍କୁ କ୍ଷମା ଦେଲେ । ୧୮୧୭ ଅଗଷ୍ଟ ମାସ ଶେଷ ସପ୍ତାହରେ, ଦାମ ସୁବୁଦ୍ଧି ନିଜର ଦୁଇ ଭାଇ – ନିତ୍ୟାନନ୍ଦ ମଙ୍ଗରାଜ ଓ ସୋମନାଥ ପାଟସାହାଣୀ ଓ ପୁତୁରା ଦାଶରଥିଙ୍କୁ ନେଇ ରେଢ଼ାଖୋଲ ଦେଇ ସମ୍ବଲପୁର ଗଲେ । ସେଠାରେ ସେପ୍ଟେମ୍ବର ମାସ ୩ ତାରିଖରେ ପହଞ୍ଚି ରଫ୍‌ସେଡ୍‌ଜଙ୍କ ପାଖରେ ଆତ୍ମସମର୍ପଣ କଲେ ।

**ବ୍ରଜାନନ୍ଦ** – ବାଣପୁର ଅଞ୍ଚଳର କନ୍ଧ ଓ ପାଣମାନଙ୍କ ସରଦାର ଥିଲେ ବ୍ରଜାନନ୍ଦ । ସେ ବାଣପୁର ବିଦ୍ରୋହରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ସେ ସରକାରଙ୍କଠାରେ ଆତ୍ମସମର୍ପଣ କଲେ । ଫଳରେ ପାଣ ଓ କନ୍ଧମାନେ ବିଦ୍ରୋହ କରିବାରୁ ବିରତ ହେଲେ ।

**ହରି ମାନସିଂହ** – ପଞ୍ଚୁପଲ୍ଲୀର ଦଳବେହେରା ଥିଲେ ହରି ମାନସିଂହ । ସେ ବିଦ୍ରୋହୀମାନଙ୍କର ନେତୃତ୍ୱ ନେଉଥିଲେ । ବାଣପୁରରେ ସାମରିକ ଆଇନ ଜାରି ହେବା ପରେ ସେ ପଞ୍ଚୁପଲ୍ଲୀ ଛାଡ଼ି ଅନ୍ୟ ଆଡ଼େ ପଳାଇଥିଲେ । ସେ ପରେ ଚିଲିକା ଭିତରେ ପାରିକୁଦ ଦ୍ୱୀପରେ ଲୁଚି ରହିଥିଲେ । ଆତ୍ମସମର୍ପଣ କଲେ ତାଙ୍କ ପ୍ରତି ସରକାର ସଦୟ ହେବେ ବୋଲି ସେ ସରକାରଙ୍କଠାରୁ ସୂଚନା ପାଇ ୧୮୧୮ ଜୁଲାଇ ମାସ ୧୬ ତାରିଖ ସନ୍ଧ୍ୟାରେ ବାଣପୁର ଆସିଲେ ଓ ବେଲ୍‌ଙ୍କ କ୍ୟାମ୍ପରେ ଆତ୍ମସମର୍ପଣ କଲେ ।

ସରକାରୀ କ୍ଷମା ପାଇବା ଘୋଷଣା ପରେ ବହୁ ବିଦ୍ରୋହୀ ନେତା ଆତ୍ମସମର୍ପଣ କଲେ । ବିଦ୍ରୋହର ଶେଷ ପର୍ଯ୍ୟନ୍ତ ତତ୍ପରଥିବା ସରଦାରମାନେ ୧୮୨୫ ମେ ମାସ ଶେଷ ଆଡ଼କୁ ଖୋରଧା ମାଜିଷ୍ଟ୍ରେଟଙ୍କ ପାଖେ ଆତ୍ମସମର୍ପଣ କଲେ । ସେମାନେ ହେଲେ –

୧. ଗୌରାଙ୍ଗ ବରିସାଲ – ଗଡ଼ଲାଲସିଙ୍ଗି ଦଳବେହେରା
୨. ବନ୍ଧୁ ସାନ୍ତରା – କୋରିର ଦଳେଇ
୩. କାଳିଆ ମାନସିଂହ – ଗଡ଼ସିରେଇର ଦଳବେହେରା
୪. ହରି ସାନ୍ତରା – ବିରଜାଇ ଠାକୁରାଣୀଙ୍କ ସେବାୟତ
୫. ମଧୁ ବିଶୋଇ – ପାଇକ
୬. ଭଗବାନ ଜାନି – ପାଇକ
୭. ରାଜୀବ ବିଶୋଇ – ପାଇକ
୮. ଉଦ୍ଧବ ନାୟକ – ପାଇକ

ଦଶମ ପରିଚ୍ଛେଦ

# ବିଚାର ଓ ଦଣ୍ଡ

୧୮୧୭ ମେ ମାସ ୧୧ ତାରିଖରେ ବାରବାଟୀ ଦୁର୍ଗରେ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ କଡ଼ା ପହରାରେ ରଖିବା ପୂର୍ବରୁ ବର୍ଣ୍ଣିତ ।

ରାଜା ନିଜ ରକ୍ଷାପାଇଁ ଇଂରେଜ ସରକାରଙ୍କୁ ଜୁନ ମାସ ଆଡ଼କୁ ଏକ ଚିଟାଉ ଦେଇଥିଲେ । ସେଥିରେ ସେ ବିଦ୍ରୋହରେ ନିଜର ସମ୍ପୃକ୍ତିକୁ ଏକବାରେକେ ଅସ୍ୱୀକାର କରିଥିଲେ । ନିଜର ନିର୍ଦ୍ଦୋଷତା ପ୍ରମାଣିତ କରିବାପାଇଁ ବକ୍‌ସି ଜଗବନ୍ଧୁଙ୍କ ଉପରେ ସବୁ ଦୋଷ ଢାଳି ଦେଇଥିଲେ । ସେ ସେଥିରେ ଲେଖିଥିଲେ – ୧୪ ତାରିଖ ଖରାବେଳେ ଘୃଣ୍ୟ ଜଗବନ୍ଧୁ ମୋ ନିକଟକୁ ଦୁଇ ତିନି ହଜାର ଲୋକଙ୍କୁ ସାଙ୍ଗରେ ଧରି ଆସିଲେ । ବଳପୂର୍ବକ ମୋ ଘର ଭିତରେ ପଶି ମୁଁ ଯେଉଁ ଗମ୍ଭୀରିରେ ବସିଥିଲି ସେଠାକୁ ଆସିଲେ । ମୋତେ କହିଲେ – ‘‘ଆମେ ଦଳେଇ ଓ ଦଳବେହେରାମାନେ ସମସ୍ତେ ଏକମତ ହୋଇଛୁ । ଆପଣ ରାଣୀମାନଙ୍କ ସହ ଖୋର୍ଦ୍ଧାକୁ ଯିବା ଉଚିତ ହେବ ।’’

ମୁଁ ଉତ୍ତର ଦେଲି – ‘‘ଇଂରେଜମାନେ ହିନ୍ଦୁସ୍ଥାନର ମାଲିକ । ମୁଁ କମ୍ପାନୀଙ୍କ ପ୍ରତି ଅନୁଗତ । ସେମାନଙ୍କର ଦୟା ଓ ଆଶ୍ରୟ ମୁଁ ଏବେ ଦୀର୍ଘକାଳ ଭୋଗ କରି ଆସୁଛି । ଏମାନଙ୍କ ବିରୋଧରେ ବିଦ୍ରୋହ କରିବା ଭଳି ମୂର୍ଖତା ଆପଣମାନଙ୍କର କାହିଁକି ହେଲା ? ଆପଣଙ୍କର ଏ ଦୋଷରେ ମୋତେ ଭାଗୀ କରିବାପାଇଁ କାହିଁକି ଉଦ୍ୟମ କରୁଛନ୍ତି ।’’

ଜଗବନ୍ଧୁ ତାଙ୍କ ଉତ୍ତରରେ ବଙ୍ଗାଳୀମାନଙ୍କର ତଥା ସରକାରୀ ନିର୍ଯାତନା କଥା କହିଲେ ।

ଏଥିକୁ ମୁଁ ଉତ୍ତର ଦେଲି – ‘‘ମୁଁ କାହିଁକି ଅକୃତଜ୍ଞ ଲୋକଙ୍କ ଭଳି କମ୍ପାନୀ ମୋ ପ୍ରତି ଯେଉଁ ଦୟା କରିଛନ୍ତି ତାହା ପାସୋର ଯିବି ? ଆପଣ ମୋତେ ଅସୁବିଧା ଓ ଅତ୍ୟାଚାର କଥା କହିଲେ, ସେସବୁ ସତ୍ତ୍ୱେ ଅନ୍ୟାୟ ଓ କୁଟିଳ ପଥରେ କାହିଁକି ମୁଁ ଯିବି ? ପାଗଳ ଲୋକଙ୍କ ଭଳି ବଣ ଜଙ୍ଗଲରେ ବୁଲୁଛନ୍ତି, ସେପରି ମୁଁ କାହିଁକି ହେବି ?’’

ଜଗବନ୍ଧୁ ପୁଣି ପ୍ରସ୍ତାବ ଦେଲେ ଯେ ମୁଁ (ରାଜା) ଶ୍ରୀଜଗନ୍ନାଥଙ୍କ ସେବା କାର୍ଯ୍ୟରେ ରହିପାରେ, ମାତ୍ର ପୁତ୍ର ଜେନାମଣି ଓ ରାଣୀଙ୍କୁ ଖୋର୍ଦ୍ଧା ନେଇଯିବେ ।

ଏହାଶୁଣି ମୁଁ କହିଲି – ‘‘ଆପଣ ଯେଉଁ ମୂର୍ଖତାର ପନ୍ଥା ଧରିଛନ୍ତି, ମୁଁ କାହିଁକି ସେଥିରେ ଯୋଗ ଦେବି ? କାହିଁକି ମୁଁ ଶ୍ରୀଜଗନ୍ନାଥଙ୍କ ସେବା ଛାଡ଼ି ଆପଣଙ୍କୁ ଅନୁସରଣ କରିବି ଓ ଜେନାମଣିଙ୍କୁ ବିଶ୍ୱାସରେ ଆପଣଙ୍କ ହାତରେ ଅର୍ପଣ କରିଦେବି ? ଯଦି ଆପଣଙ୍କର ମୋତେ ହତ୍ୟା କରିବା ଇଚ୍ଛା ଥାଏ ତାହାହେଲେ ଏହିଠାରେ ହିଁ ମୋତେ ହତ୍ୟା କରନ୍ତୁ । ଏହି ପୁଣ୍ୟ କ୍ଷେତ୍ରରେ ମଲେ ମୋର ସ୍ୱର୍ଗବାସ ହେବ ।’’

ରାଜା ତାଙ୍କ ଚିଟାଉରେ ପୁଣି ଲେଖିଥିଲେ ଯେ ତାଙ୍କୁ ବା ଜେନାମଣିଙ୍କୁ ନେବାର କୌଣସି ଆଶା ନ ଦେଖି ଜଗବନ୍ଧୁ ତାଙ୍କ (ରାଜାଙ୍କ) ସମ୍ପତ୍ତି ଓ ତାଙ୍କ ଅନୁଚରମାନଙ୍କର ସମ୍ପତ୍ତି ଲୁଟ କରି ନେଇ ପୁରୁଷୋତ୍ତମ ଛତ୍ର (ପୁରୀ) ଛାଡ଼ି ବାହାରିଗଲେ । ଗଲାବେଳେ ମଧ୍ୟ କହିଗଲେ ଯେ ଭୃତ୍ୟ ହିସାବରେ ମୋର (ରାଜାଙ୍କର) ଯେଉଁ ଦାବି ଥିଲା ସେହି ଦିନଠାରୁ ମୁଁ ହରାଇଲି ।

ରାଜା ମଧ୍ୟ ଜଗବନ୍ଧୁଙ୍କ ସହିତ ଆଲୋଚନାକୁ ଲି. ଫିଭ୍‌ରେଙ୍କୁ ଆଗରୁ ଜଣାଇଦେଇଥିବା କଥା ଚିଟାଉରେ ଉଲ୍ଲେଖ କରିଥିଲେ । ରାଜା ନିଜର ପ୍ରାଣ ରକ୍ଷା ନିମନ୍ତେ ଏହି ପନ୍ଥା ଯେ ଗ୍ରହଣ କରିଥିଲେ, ଏଥିରେ ସନ୍ଦେହ ନାହିଁ । ରାଜାଙ୍କୁ ମଧ୍ୟ ୧୮୦୫ରେ ମେଦିନୀପୁର ଜେଲରେ ବନ୍ଦୀ କରି ରଖାଯାଇଥିଲା । ସେ ନିଜର ନିର୍ଦ୍ଦୋଷତା ଦର୍ଶାଇ ସମସ୍ତ ଦୋଷ ଜୟୀ ରାଜଗୁରୁଙ୍କ ଉପରେ ପକାଇ ଦେଇଥିଲେ । ତାହାଦ୍ୱାରା ସେ ନିଜର ପ୍ରାଣ ରକ୍ଷା କରିପାରିଥିଲେ । ଜୟୀ ରାଜଗୁରୁଙ୍କୁ ଫାଶୀ ଦିଆଯାଇଥିଲା । ଇଂରେଜ ଶାସକମାନଙ୍କର ଏଥର କିନ୍ତୁ ରାଜାଙ୍କ ଉପରେ ପୂର୍ଣ୍ଣ ସନ୍ଦେହ ଜାତ ହେବା ସ୍ୱାଭାବିକ । ସେମାନେ ରାଜାଙ୍କ ପ୍ରତି କଠୋର ନୀତି ଅବଲମ୍ବନ କଲେ ।

୧୮୧୭ ମେ ମାସରୁ ରାଜାଙ୍କୁ ବାରବାଟୀ ଦୁର୍ଗରେ ରଖାଗଲା । ତାଙ୍କ ରହିବାପାଇଁ ବାରବାଟୀ ଦୁର୍ଗରେ ଏକ କ୍ଷୁଦ୍ର ଗୃହ ନିର୍ମାଣ କରାଗଲା । ତାଙ୍କପାଇଁ ଦୈନିକ ଭତ୍ତା ଟ୨୫ର ବ୍ୟବସ୍ଥା ହେଲା । ପୁରୀରେ ପରିବାରବର୍ଗଙ୍କ ଭରଣପୋଷଣପାଇଁ ମାସିକ ଟ୫୦୦ ଦିଆଗଲା । ୧୮୧୭ ନଭେମ୍ବର ମାସ ୩୦ ତାରିଖରେ ରାଜାଙ୍କର ମୃତ୍ୟୁ ହେଲା ।

## ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ହତ୍ୟା ?

କିନ୍ତୁ ପ୍ରଶ୍ନ ଉଠେ, ରାଜାଙ୍କର ମୃତ୍ୟୁ ଅକାଳରେ କିପରି ହେଲା ? ୧୭୯୮ ମସିହାରେ ସିଂହାସନ ଆରୋହଣ କଲାବେଳକୁ ସେ ନାବାଳକ ଥିଲେ ।

ସେତେବେଳକୁ ତାଙ୍କୁ ୧୭ ବା ୧୮ ବର୍ଷ ବୟସ ହୋଇଥିବା ଧରାଗଲେ, ତା'ର ୧୯/୨୦ ବର୍ଷ ପରେ, ଅର୍ଥାତ୍ ୧୮୧୭ ମସିହାରେ ତାଙ୍କୁ ୩୭/୩୮ ବର୍ଷ ବୟସ ହୋଇଥିବା ଅନୁମାନ କରାଯାଏ । ତାଙ୍କ ମୃତ୍ୟୁର କାରଣ କୌଣସି ନଥିପତ୍ରରୁ ମିଳୁ ନାହିଁ । ଶାରୀରିକ ଅସୁସ୍ଥତା ହେତୁ ସେ ମୃତ୍ୟୁବରଣ କରିଥିବା ମଧ୍ୟ ବିଶ୍ୱାସଯୋଗ୍ୟ ନୁହେଁ । ତା'ର କାରଣ ହେଲା, ଚିକିତ୍ସାପାଇଁ ଅର୍ଥର ବ୍ୟବସ୍ଥା ହୋଇଥିବା ବିଷୟ କୌଣସି ସୂତ୍ରରୁ ମିଳୁ ନାହିଁ । ବାରବାଟୀ ଦୁର୍ଗ ମଧ୍ୟରେ ଏକ କ୍ଷୁଦ୍ର ଗୃହ (Hut) ରେ ମେ ମାସ ୨୦ ତାରିଖରୁ ନଭେମ୍ବର ମାସ ପର୍ଯ୍ୟନ୍ତ ରହିବାପରେ ହଠାତ୍ ମୃତ୍ୟୁବରଣ କରିବା ଅସ୍ୱାଭାବିକ ନୁହେଁ କି ?

୧୮୦୪ ମସିହାରେ ରାଜଗୁରୁଙ୍କ ସହିତ ପ୍ରଥମ ସଂଘର୍ଷ ଚାଲିଥିବାବେଳେ କର୍ଣ୍ଣେଲ ହାରକୋର୍ଟ ତତ୍କାଳୀନ ଭାରତର ଗଭର୍ଣ୍ଣର ଜେନେରାଲ ୱେଲସଲିଙ୍କୁ ଏକ ପତ୍ରରେ ଜଣାଇଥିଲେ ଯେ – ରାଜାଙ୍କୁ ଏକବାରେକ ନିଶ୍ଚିହ୍ନ କରିଦେବା ଅଭିପ୍ରାୟ ଅବଶ୍ୟ ତାଙ୍କର ନାହିଁ । ତେବେ ମୁକୁନ୍ଦଦେବଙ୍କୁ (ସେଇ ଲୋକଟାକୁ) ଜବତ୍ କରିବା ନିତାନ୍ତ ଆବଶ୍ୟକ । ପ୍ରଶ୍ନ ଉଠେ, ରାଜାଙ୍କୁ ନିଶ୍ଚିହ୍ନ କରିବା (Exterminate) କଥା କିଏ କାହିଁକି ଉଠେଇଥିଲେ ? କେଉଁ ପରିପ୍ରେକ୍ଷୀରେ ମଧ୍ୟ ଉଠିଥିଲା ? ଅବଶ୍ୟ ଗଭର୍ଣ୍ଣର ଜେନେରାଲ ହାରକୋର୍ଟଙ୍କ ପ୍ରସ୍ତାବକୁ ଗ୍ରହଣ କରି ନ ଥିଲେ । ତା'ର କାରଣ, ୧୮୦୪ ମସିହାରେ ଇଂରେଜମାନଙ୍କ ସ୍ଥିତି ସେପରି ସୁଦୃଢ଼ ନ ଥିଲା; କିନ୍ତୁ ୧୮୧୭ ମସିହା ଆଡ଼କୁ ସେ ପରିସ୍ଥିତି ସମ୍ପୂର୍ଣ୍ଣଭାବେ ପରିବର୍ତ୍ତିତ ହୋଇଯାଇଥିଲା । ଇଂରେଜମାନେ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷ ଜୟ କରି ନିଜର ସାମ୍ରାଜ୍ୟବାଦୀ ଶାସନ-କଳକୁ ସୁଦୃଢ଼ କରିସାରିଥିଲେ । ତେଣୁ ୧୮୧୭ ମସିହା ମାର୍ଚ୍ଚ ମାସରେ ଦେଖାଦେଇଥିବା ଭୟାବହ ଆନ୍ଦୋଳନକୁ ଦମନ କରିବାପାଇଁ ବ୍ୟାପକ ସାମରିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । ଆନ୍ଦୋଳନର କେନ୍ଦ୍ରବିନ୍ଦୁରେ ଥିବା ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ପ୍ରତି କୋହଳ ନୀତି ଅବଲମ୍ବନ କରିବା ପ୍ରଶ୍ନ ତେଣୁ ନ ଥିଲା । ବରଂ ତାଙ୍କୁ ହଟାଇ ଦିଆଯାଇ ଓଡ଼ିଶାରେ ଇଂରେଜ ଶାସନର ମୂଳଭିତ୍ତିକୁ ଆହୁରି ସୁଦୃଢ଼ କରିବା ଅପରିହାର୍ଯ୍ୟ ହୋଇପଡ଼ିଥିଲା । ସେଇ ଉଦ୍ଦେଶ୍ୟରେ ବାରବାଟୀ ଦୁର୍ଗର ଏକ କ୍ଷୁଦ୍ର ପ୍ରକୋଷ୍ଠରେ ବନ୍ଦୀହୋଇ ରହିଥିବା ଅସହାୟ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଯେ କୌଣସି ଉପାୟରେ ହେଉ ନିଶ୍ଚିହ୍ନ (Exterminate) କରାଯିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ଅବଶ୍ୟ ଏହାର ପ୍ରାମାଣିକ ତଥ୍ୟ କିଛି ନାହିଁ । ଅତୀତରେ ବିର୍ସା ମୁଣ୍ଡା, ଜୟୀ ରାଜଗୁରୁ ପ୍ରଭୃତିଙ୍କ ମୃତ୍ୟୁ ଭଳି ଖୋର୍ଦ୍ଧାର ଶେଷ ସ୍ୱାଧୀନ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ମୃତ୍ୟୁର କାରଣ ଅଜ୍ଞାତ

ଓ ରହସ୍ୟାବୃତ ହୋଇ ରହିଛି । ଏ ବିଷୟରେ ଅଧିକ ଅନୁସନ୍ଧାନ ଯେ ନିତାନ୍ତ ଆବଶ୍ୟକ, ଏଥିରେ ଦ୍ୱିମତ ନାହିଁ ।

**ଫାଶୀଦଣ୍ଡ –** ବିଦ୍ରୋହୀ ନେତା ଜଗବନ୍ଧୁଙ୍କ ବିରୋଧରେ ପୋଲିସଙ୍କୁ ଖବର ଦେଇଥିବା ହେତୁ ଚରଣ ପଟ୍ଟନାୟକଙ୍କୁ ସ୍ୱଷ୍ଟ ଦିବାଲୋକରେ ବିଦ୍ରୋହୀମାନେ ସମସ୍ତ ଗ୍ରାମବାସୀଙ୍କ ସମ୍ମୁଖରେ ହତ୍ୟା କରିଥିଲେ । କେହି ଜଣେ ହେଲେ ଗ୍ରାମବାସୀ ଚରଣଙ୍କୁ ରକ୍ଷା କରିବାକୁ ଆଗେଇ ଆସି ନ ଥିବାରୁ ଏହି ହତ୍ୟାକାଣ୍ଡପାଇଁ ସମସ୍ତ ଗ୍ରାମବାସୀଙ୍କୁ ଦାୟୀ କରାଯାଉ ବୋଲି ବ୍ରିଗେଡିୟର ଥୋମାସ୍ ସୁପାରିସ କରିଥିଲେ । ତାହା ଅବଶ୍ୟ ଗୃହୀତ ହୋଇ ନ ଥିଲା । ତେବେ ବିଚାରରେ ଚରଣ ପଟ୍ଟନାୟକଙ୍କୁ ହତ୍ୟା ଅପରାଧରେ ୧୮୧୯ ମସିହା ମେ ମାସ ୧ ତାରିଖରେ ସଚ୍ଚିଦାନନ୍ଦ ପଟ୍ଟନାୟକ ଫାଶୀ ପାଇଲେ । ୧୮୧୯ ମସିହା ସେପ୍ଟେମ୍ବର ମାସ ୧୧ ତାରିଖରେ ସେହି ହତ୍ୟା ଅପରାଧପାଇଁ ଗୋପାଳ ଛୋଟରାୟ, ବଂଶୀ ପାଇକରାୟ, ରାମସିଂହ, ନାଥ ପ୍ରଧାନ ଓ ନୃସିଂହ ମଧ୍ୟ ଫାଶୀ ପାଇଲେ ।

ସମ୍ବଲପୁର ରାଣୀ ମୁକ୍ତାଦେବୀଙ୍କ ଦେବାନ ସଦାଶିବ ରାୟଙ୍କୁ ହତ୍ୟା ଅପରାଧରେ ବିଦ୍ରୋହୀ ନେତା କାଳିଆ ଭୁଇମୂଳକୁ ବୋଲଗଡ଼ ଆମ୍ବତୋଟାରେ ଫାଶୀ ଦିଆଯାଇଥିଲା । ପର୍ଶୁରାମ ରାଉତରାୟଙ୍କ କୋର୍ଟରେ ବିଚାର ହୋଇ ପରେ ଫାଶୀ ଦିଆଯାଇଥିଲା ।

(କ) ଆଜୀବନ ନିର୍ବାସନ ଦଣ୍ଡ – କୁଜଙ୍ଗର ପ୍ରଖ୍ୟାତ ବିଦ୍ରୋହୀ ନେତା ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଯୋଷୀଙ୍କୁ ଆଜୀବନ ନିର୍ବାସନ ଦଣ୍ଡ ଦିଆଗଲା । ସେମାନଙ୍କୁ ନେଇ ଆଲ୍ଲିପୁର ଜେଲରେ ରଖାଗଲା । ଅନ୍ୟମାନେ ହେଲେ ମାଧବ ରାଉତ, Ruhak Sah (ରଙ୍କ ସାହୁ) ? ଧୋବା ଦାସ, କାଳନ୍ଦୀ ପାତ୍ର, କେଶବ ସାମଲ, ... ନାୟକ, .... ମହାନ୍ତି, ବନମାଳୀ ସାମଲ, .... ବିଶ୍ୱାଳ, ସେକ୍ ସଫୁଲ୍ଲା, ସେକ୍ ସରଦାର, .... ମହାପାତ୍ର, ପଞ୍ଜୁଭୋଇ, ଉଦ୍ଧବ ରାଉତ, ଦାମ ଜେନା, ରୂପ ମହାପାତ୍ର, କିଶୋର ସୁକୁଲ, ଅଚ୍ୟୁତ ଗୋଛାୟତ, ଜଗୁ ନାୟକ, ଗୌରି ଗୋଛାୟତ, ପରମା, (ବିଷ୍ଣୁ ମିଶ୍ର), ଦନେଇ, କରୁଣା ନାୟକ, କେଳାଇ ନାୟକ, ନାରାୟଣ ନାୟକ ଓ ଭାଗବତ ମହାନ୍ତି ।

(ଖ) ୧୮୧୯ ମସିହା ଡିସେମ୍ବର ମାସ ୧୦ ତାରିଖରେ ୧୦୩ ଜଣ ଆଜୀବନ ଦ୍ୱୀପାନ୍ତରିତ ଦଣ୍ଡ ପାଇଲେ । ସେମାନଙ୍କୁ ଆଲ୍ଲିପୁର ଜେଲରେ ରଖାଗଲା । ସେମାନେ ହେଲେ – ନଟବର ସୁନ୍ଦରା, ଜଗବନ୍ଧୁ ମହାପାତ୍ର, ଫକିର ଜେନା, ଗୌର ନରେନ୍ଦ୍ର, ନାରାୟଣ ଶ୍ରୀଚନ୍ଦନ, ପ୍ରହଲ୍ଲାଦ ବାରିକ, କାଳୁପାତ୍ର, କମଳଲୋଚନ ଚମ୍ପତି,

ଧନୁର୍ଜି ମହାପାତ୍ର, ପଞ୍ଚୁ କହଲସିଂ, କେଳେଇ ଚମ୍ପତି, ଦାମ ମାନସିଂହ, ରୋସନ୍ ଖାଁ, ଉଜ୍ଜଳ ତିୱାରି, ଗୌର ସଂଗ୍ରାମସିଂହ, ରାମ ନାୟକ, ଗାଣ୍ଠୁ ନାୟକ, ଖଡୁଆ, ଆରତ ନାୟକ, କଣ୍ଡୁରି ନାୟକ, ବିକଳ, ଭିକ୍ଷାରୀ ନାୟକ, ନିଧି ନାୟକ, ପରମାନନ୍ଦ ସିଂହ, ଦାମ ଗଜେନ୍ଦ୍ର, ବୁରୁନ୍ଦା ପାତ୍ର, ବାମ ନାୟକ, ଚକର ଦାସ, ବିନୋଦ ନାୟକ, ଦୁଲଭ ଦେହୁରି, ବିଷ୍ଣୁ ନାୟକ, ବିକା ନାୟକ, ବିଷ୍ଣୁ ସ୍ୱାଇଁ, ଭଗତ ମହାରଣା, ପର୍ଶୁରାମ ପାତ୍ର, ବିଷ୍ଣୁ ବରାଳ, ଗୋବିନ୍ଦ ସୁବୁଦ୍ଧି, ଚଇନ ସ୍ୱାଇଁ, ପଞ୍ଚୁ ପ୍ରଧାନ, ଯୋଗୀ ଶ୍ରୀଚନ୍ଦନ, ଭାଗୀରଥି ରାୟ, ଉଚ୍ଛବ ବେହେରା, ଅର୍ଜୁନ ଡେହୁରି, ଚୈତନ ମାଝି, ଲୋକନାଥ ଛୁଆଳସିଂହ, ସାଧୁ ମଙ୍ଗରାଜ, ବୁଦ୍ଧି ଡେହୁରି, ମାଗା ନାୟକ, ଫଗୁ ବଢ଼େଇ, ରାଜିବ ନାୟକ, ବରଜୁ ନାୟକ, ବୁରୁନ୍ଦା ନାୟକ, ବାସୁ ବେହେରା, ପଞ୍ଚୁ ନାୟକ, ରଘୁ ନାୟକ, ନିଧି ନାୟକ, ପାଣ୍ଡବ ନାୟକ, ବନ୍ଧୁ ନାୟକ, ସକୁନ ନାୟକ, ପିଣ୍ଡାକି ନାୟକ, କିଲ୍ଲା ନାୟକ, କଣ୍ଡୁରି ନାୟକ, ଦାମ ନାୟକ, ବୁରୁନ୍ଦା, ଫକିର ସିଂହ, ମହେଶ୍ୱର ପାଇକରାୟ, ମୁଳି ସେଠୀ, ଉଦୟ ହରିଚନ୍ଦନ, କୁଞ୍ଜବନ ନାୟକ, ବୁରୁନ୍ଦା ନାୟକ, ଜଗତ ନାୟକ, ମୁକୁନ୍ଦ ନାୟକ, ପିଣ୍ଡାକି ନାୟକ, ପଦ ନାୟକ, ବୁଲା ନାୟକ, ଭୀମ ସ୍ୱାଇଁ, ଗୌରାଙ୍ଗ ଛୁଆଳସିଂହ, ଭିକା ଦଳେଇ, ପୁରୁଷୋତ୍ତମ ସିଂହ, ଲକ୍ଷ୍ମଣ ...., ବରଜୁ ଭଞ୍ଜ, ରାମ ଦେହୁରି, ଭୁଜ ମାଝି, ପରମା ଜେନା, ନବିନ ପାତ୍ର, ଗୋବିନ୍ଦ ଜେନା, କୃପାଣ ପାଣି, ଗୁନ ନାୟକ, ଋଷି ପାତ୍ର, ମାଧବ ଜେନା, ନାରାୟଣ ଦଳେଇ, ଫଗୁ ନାୟକ, ମହାଦେବ ଜେନା, ପିଣ୍ଡିକି ପାତ୍ର, ଯୋଗୀ ପାତ୍ର, ମଧୁ ପାତ୍ର, ମଧୁ ପ୍ରଧାନ, ବଳଭଦ୍ର ରାୟ, ନିଳଧର ହରିଚନ୍ଦନ, ସଖୁନ ଛୁଆଳସିଂହ, ବାଉରି ମହାନ୍ତି, ଉଦ୍ଧବ ମଳିକ ଓ ଧ୍ରୁବ ମଳିକ ।

(ଗ) ୧୮୧୯ ମସିହା ଡିସେମ୍ବର ମାସ ୧୦ ତାରିଖରେ ଆଲିପୁର ଜେଲରେ ୧୪ ବର୍ଷ ସଶ୍ରମ କାରାଦଣ୍ଡରେ ଯେଉଁମାନେ ଦଣ୍ଡିତ ହେଲେ, ସେମାନେ ହେଲେ –

ନିତ୍ୟାନନ୍ଦ ପଟ୍ଟନାୟକ, ପଦ୍ମଚରଣ ଦାସ, ବିଷ୍ଣୁଚରଣ ଦାସ, ଚୈତନ୍ୟ ଚରଣ ଦାସ, କୃତ୍ତିବାସ ରାଉତରା, ଧନୁ ରଣସିଂହ, ଲୋକା ମୁଦୁଲି, କାହ୍ନୁ ମଳିକ (ଚୌକିଦାର), କୁଶି ମଲ୍ଲିକ ।

(ଘ) କେତେଜଣ ଅଭିଯୁକ୍ତ ବିଦ୍ରୋହୀ ପାଇକଙ୍କୁ ଅସ୍ଥାୟୀ ନିର୍ବାସନ ଦଣ୍ଡ ଦିଆଯାଇଥିଲା । ମେଦିନୀପୁର ଜେଲରେ ସେହି ୨୫ ଜଣଙ୍କୁ ବନ୍ଦୀ କରି ରଖାଗଲା । ସେମାନେ ହେଲେ – ରାମ ମଳିକ, ହରି ଭୋଇ, ଏକାଦଶୀ ଭୋଇ, ଗୋବିନ୍ଦ ମାଝି, ଯୋଗୀ ମଳିକ, ଚୈତନ୍ୟ ସ୍ୱାଇଁ, ହରେକୃଷ୍ଣ ସାହୁ, ଭରତ ନାୟକ, ମନସୁର, ରତନ ମଳିକ, ନିଧି ମଳିକ (ଚୌକିଦାର), ରଘୁ ସାହୁ, ତୁଇଁଆ ସାହୁ,

କହ୍ନେଇ ଶତପଥୀ, ଦୈତାରି ଶତପଥୀ, ରତ୍ନାକର ମିଶ୍ର, ବନ୍ଧୁ ସାମଲ, ବଂଶୀ ମଲ୍ଲିକ, କଲ୍ୟାଣ ମଲ୍ଲିକ, ଖୁରୁଧା ମଲ୍ଲିକ, ବୈଷ୍ଣବ ମଳିକ, ସୁଲଭ ମଳିକ, ଫକିର ମଳିକ, ବଲ୍ଲଭ ଜେନା, ଆତଙ୍ଗ ନାୟକ ।

ଆଲୋଚକ ଫକୀର ହରିଚନ୍ଦନ ପ୍ରଥମ ବ୍ରିଟିଶ ଗୁଳି ମାଡ଼ରେ ମୃତ୍ୟୁବରଣ କରିଥିବା ପାଇକମାନଙ୍କ କଥା ଉତ୍ଥାପନ କରିଛନ୍ତି । ସେ 'ଖୋର୍ଦ୍ଧା ଇତିହାସର ଅନ୍ତରାଳେ' ଶୀର୍ଷକ ପୁସ୍ତକରେ ଲେଖିଛନ୍ତି – ''ବିଦ୍ରୋହୀମାନେ ଗଙ୍ଗପଡ଼ାଠାରେ ଅପ୍ରେଲ ୩ ତାରିଖରେ କ୍ୟାପଟେନ୍ ଫେରିସ୍‌କୁ ହତ୍ୟା କଲେ । ତା'ପରେ ଇଂରେଜ ସରକାର ଅତି କଠୋର ପନ୍ଥାରେ ବିଦ୍ରୋହକୁ ଦମନ କଲେ । ଅପ୍ରେଲ ୧୮ ତାରିଖରେ କ୍ୟାପ୍ଟେନ ଲି. ଫାବ୍ରେ ଦୋବନ୍ଧାଠାରେ ଘାଟୀ କରିଥିବା ହଜାର ହଜାର ପାଇକଙ୍କ ଉପରେ ୫୫୦ ଜଣ ବନ୍ଧୁକଧାରୀ ସୈନ୍ୟଙ୍କଦ୍ୱାରା ଆଖିବୁଜା ଗୁଳି ଚଳାଇବା ଫଳରେ କେତେ ମଲେ, କେତେ ଦରମରା ହେଲେ, କେତେ ଖଣ୍ଡିଆ ଖାବରା ହେଲେ ଓ କେତେ ଅକାମୀ ହୋଇପଡ଼ିଲେ ତା'ର ହିସାବ କେହି ରଖି ନାହାନ୍ତି । × × × ଯେଉଁମାନେ ବ୍ରିଟିଶ ସୈନ୍ୟଙ୍କ ଗୁଳିମାଡ଼ରେ ପ୍ରାଣ ହରାଇଲେ × × × ସେମାନଙ୍କର ଠିକ୍ ସଂଖ୍ୟା ନାହିଁ ।''

---

ଏକାଦଶ ପରିଚ୍ଛେଦ

# ପୁରସ୍କାର ପ୍ରଦାନ

୧୮୧୭ ବିଦ୍ରୋହରେ ଭାଗ ନେଇଥିବା ପାଇକ ସରଦାରମାନଙ୍କୁ ଧରାଇ ଦେବାରେ ବା ସେମାନଙ୍କ ବିଷୟରେ ତଥ୍ୟ ଯୋଗାଇଦେଇଥିବାରୁ ସରକାର ପୁରସ୍କାର ପ୍ରଦାନ କରିଥିଲେ ।

ପିଣ୍ଡିକି ବାହୁବଳେନ୍ଦ୍ରଙ୍କୁ ଧରାଇ ଦେଇଥିବାରୁ ମଳିପଡ଼ା ଜମିଦାର ଧ୍ରୁବଜୟ ହରିଚନ୍ଦନଙ୍କୁ ଏକ ହଜାର ଟଙ୍କା ପୁରସ୍କାର ଦିଆଗଲା । ବହୁ ଜାଗିରି ଜମି ସହିତ ରାଜପଦ ଓ ତମ୍ବାପାତିଆ ସନନ୍ଦ ମଧ୍ୟ ତାଙ୍କୁ ମିଳିଲା ।

ପିଣ୍ଡିକି ବାହୁବଳେନ୍ଦ୍ରଙ୍କ ତିନି ଜଣ ବିଶ୍ୱସ୍ତ ଅନୁଗାମୀ ଥିଲେ ସାଧୁଚରଣ ମଙ୍ଗରାଜ, ବିଷ୍ଣୁ ପାଇକରା ଓ ଧନୁ ଜେନା । ସେମାନଙ୍କୁ ଧରାଇ ଦେଇଥିବାରୁ ମଧୁ ମହାନ୍ତି ଓ ତାଙ୍କ ପୁ[illegible]ରା ବିଷ୍ଣୁ ମହାନ୍ତିଙ୍କୁ ତିନି ଶତ ଲେଖାଏଁ ଟଙ୍କା ପୁରସ୍କାର ଦିଆଗଲା ।

ରାଜଦ୍ରୋହ ଅପରାଧରେ ପ୍ରାଣଦଣ୍ଡ ପାଇଥିବା ଗୋପାଳ ଛୋଟରାୟଙ୍କୁ ଧରିଥିବାରୁ ଖୋରଧା ଦାରୋଗା ଶିବପ୍ରସାଦ ରାୟଙ୍କୁ ଟ୧୦୦୦ ପୁରସ୍କାର ଦିଆଗଲା ।

ପଦ୍ମନାଭ ଛୋଟରାୟଙ୍କୁ ଧରାଇବାରେ ସାହାଯ୍ୟ କରିଥିବାରୁ ନିମ୍ନୋକ୍ତ ବ୍ୟକ୍ତିମାନେ ପୁରସ୍କୃତ ହେଲେ –

| | | | |
|---|---|---|---|
| (କ) | ରାମ ମାର୍ଥା | – | ଟ ୫୦୦ |
| (ଖ) | ଭରତ ମହାନ୍ତି | – | ଟ ୧୦୦ |
| (ଗ) | ଜଗବନ୍ଧୁ ମଙ୍ଗରାଜ | – | ଟ ୧୦୦ |
| (ଘ) | ନବୀନ ବାହୁବଳେନ୍ଦ୍ର | – | ଟ ୧୦୦ |
| (ଙ) | ଶେର ଖାଁ | – | ଟ ୧୦୦ |
| (ଚ) | ଧନୁ | – | ଟ ୧୦୦ |

ମୋଟ – ଟ୧୦୦୦

**ଛତ୍ରଗଡ଼ର ବିଷୋୟୀ** – ରଥୀ ସାମନ୍ତସିଂହାର ଓ ତାଙ୍କ ପରିବାରବର୍ଗଙ୍କୁ ଧରାଇବାରେ ସରକାରୀ ପକ୍ଷକୁ ବହୁ ସାହାଯ୍ୟ କରିଥିବାରୁ ଗୌରାଙ୍ଗ ପଟ୍ଟନାୟକଙ୍କୁ ସରକାର ଟ ୫୦ ପୁରସ୍କାର ଦେଇଥିଲେ ।

ସିକୋଗ୍ରାମର ପାଇକ ସରଦାର ଦାମ ସୁବୁଦ୍ଧିଙ୍କୁ ଧରାଇ ଦେଇଥିବାରୁ ସରକାରଙ୍କ ପକ୍ଷରୁ ଆଠମଲ୍ଲିକ ରାଜାଙ୍କୁ ଟ ୧୦୦୦ ପୁରସ୍କାର ମିଳିଥିଲା ।

ବକ୍ସି ଜଗବନ୍ଧୁଙ୍କ ପ୍ରଧାନ ସହଯୋଗୀ, ଯଥା – ଧରମୁ ସୁବୁଦ୍ଧି, ନିତ୍ୟାନନ୍ଦ ମଙ୍ଗରାଜ, ଶମ୍ଭୁନାଥ ପାଟଶାଣୀ ଓ ଦାଶରଥି ପାଇକରାୟଙ୍କୁ ସମ୍ବଲପୁରଠାରେ ଆଠମଲ୍ଲିକ ରାଜା ଧରାଇବାରେ ସାହାଯ୍ୟ କରି ସରକାରଙ୍କଠାରୁ ଏକ ହଜାର ଟଙ୍କା ପୁରସ୍କାର ପାଇଥିଲେ ।

ବଲ୍ଲଭରାୟ ଓ ମଧୁସୂଦନ ମଙ୍ଗରାଜଙ୍କୁ ଧରାଇ ଦେବାରେ ସାହାଯ୍ୟ କରିଥିବାରୁ ବନମାଳୀ ନରେନ୍ଦ୍ର ସରକାରଙ୍କଠାରୁ ଟ ୧୦୦୦ ପୁରସ୍କାର ପାଇଲେ ।

କୁଜଙ୍ଗ ରାଜା ମଧୁସୂଦନ ଷେଣ୍ଡ ବ୍ରିଟିଶ ସରକାରଙ୍କ ବିରୋଧରେ ସଂଗ୍ରାମରେ ଯୋଗ ଦେଇଥିଲେ । ମାତ୍ର କେନେଟ୍‌ଙ୍କ ଦୃଢ଼ କାର୍ଯ୍ୟାନୁଷ୍ଠାନ ଫଳରେ ବିଦ୍ରୋହକୁ ଦମନ କରାଗଲା । ଅନ୍ୟ ଉପାୟ ନ ଦେଖି ରାଜା ମଧୁସୂଦନ ଷେଣ୍ଡ ଆକ୍ରମଣ ବନ୍ଦ କରି କେନେଟ୍‌ଙ୍କ ନିକଟରେ ଆତ୍ମସମର୍ପଣ କଲେ । ସରକାରଙ୍କ ପ୍ରିୟପାତ୍ର ହେବାପାଇଁ ବିଦ୍ରୋହୀ ସରଦାର ନାରାୟଣ ପରମଗୁରୁ ଓ ବାମଦେବ ପାଟଯୋଷୀଙ୍କ ସମ୍ବନ୍ଧରେ ଖବର ଗୁପ୍ତରେ କେନେଟ୍‌ଙ୍କୁ ଜଣାଇଦେଲେ । ଫଳରେ ଦୁଇ ଜଣ ପ୍ରଧାନ ସରଦାର ଧରା ପଡ଼ିଲେ । ପରେ କୁଜଙ୍ଗ ରାଜା ମଧୁସୂଦନ ଷେଣ୍ଡଙ୍କୁ ଖଲାସ କରିଦିଆଗଲା ।

ଭୂପଭରଣ ସିଂହ ପ୍ରଥମରୁ ବକ୍ସିଙ୍କ ଅଧୀନରେ ପାଇକ ସରଦାର ହୋଇ ବିଦ୍ରୋହରେ ଯୋଗ ଦେଇଥିଲେ । ପରେ ସରକାରଙ୍କ ଗୁପ୍ତଚର ହୋଇ କାର୍ଯ୍ୟ କଲେ । ତାଙ୍କୁ ସରକାର କ୍ଷମା ଦେଲେ ।

ବକ୍ସି ଜଗବନ୍ଧୁଙ୍କୁ ଧରିବାରେ ସମର୍ଥ ନ ହେବାରୁ ବ୍ରିଟିଶ ସରକାର ବକ୍ସିଙ୍କ କୁଟୁମ୍ବଙ୍କୁ ଧରିବାକୁ ଉଦ୍ୟମ କଲେ । ଗଞ୍ଜାମ ଜିଲ୍ଲାରେ ଧରା ହୋଇ ବକ୍ସିଙ୍କ କୁଟୁମ୍ବ ଖୋରଧା ଆସିଲେ । ଖୋରଧାରେ ଗୋଟିଏ ଘର ମାସିକ ଟ ୧୦ ଭଡ଼ାରେ ନିଆଗଲା ଓ ବକ୍ସିଙ୍କ ପରିବାରକୁ ସରକାରଙ୍କ ତରଫରୁ ରଖାଗଲା । ସେମାନଙ୍କ ଭରଣପୋଷଣପାଇଁ ଭତ୍ତା ଦିଆଗଲା ।

ବକ୍ସିଙ୍କ କୁଟୁମ୍ବକୁ ଧରାଇ ଦେଇଥିବାରୁ ଫକୀର ପଟ୍ଟନାୟକ ଓ ତାଙ୍କ ସହକର୍ମୀମାନଙ୍କୁ ସରକାର ଟ ୨୦୦ ପୁରସ୍କାର ଦେଇଥିଲେ ।

ଗଞ୍ଜାମର ଦୁଇ ଜଣ ଲୋକ ବକ୍ସିଙ୍କ ସମ୍ବନ୍ଧରେ ସରକାରଙ୍କୁ ଖବର ଦେଇଥିବାରୁ ସେମାନଙ୍କୁ ଟ ୭୬୫୮ ପୁରସ୍କାର ଦିଆଯାଇଥିଲା ।

ଦ୍ୱାଦଶ ପରିଚ୍ଛେଦ

# ଗରିଲା ଯୁଦ୍ଧ

୧୮୧୭ ପ୍ରତ୍ୟକ୍ଷ ସଂଗ୍ରାମ ଶେଷ ହେଲା ସତ, ତା'ପରେ ଆରମ୍ଭ ହେଲା ଆଉ ଏକ ଅଧ୍ୟାୟ – ଗରିଲା ଯୁଦ୍ଧ । ବକ୍‌ସି ଜଗବନ୍ଧୁ, କୃଷ୍ଣଚନ୍ଦ୍ର ବିଦ୍ୟାଧର, ପଦ୍ମନାଭ ଛୋଟରା, ପୀତବାସ ମଙ୍ଗରାଜ ପ୍ରଭୃତି ଧରା ପଡ଼ି ନ ଥିଲେ । ସେମାନଙ୍କୁ ଧରାଇ ଦେବାପାଇଁ ପୁରସ୍କାର ଘୋଷଣା କରାଯାଇଥିଲା । ତା'ର ଫଳ କିନ୍ତୁ କିଛି ହେଲା ନାହିଁ । ଜଗବନ୍ଧୁ ଆରମ୍ଭ କଲେ ଗରିଲା ଯୁଦ୍ଧ । ତାଙ୍କରି ନିର୍ଦ୍ଦେଶରେ ସଂଗ୍ରାମ ଏକ ଭିନ୍ନ ମୋଡ଼ ନେଲା ।

ଜଗବନ୍ଧୁ ଇଂରେଜମାନଙ୍କ ସହିତ ପ୍ରତ୍ୟକ୍ଷ ସଂଗ୍ରାମରେ ବିଜୟ ଲାଭ କରିବା ସମ୍ଭବ ନୁହେଁ ବୋଲି ଜାଣିଥିଲେ । ତା'ର ବହୁ କାରଣ ଥିଲା । ପ୍ରଥମରେ, ଇଂରେଜମାନଙ୍କ ଭଳି ତାଙ୍କର ଦୃଢ଼ ସଙ୍ଗଠନ ନ ଥିଲା । ସେମାନଙ୍କ ପାଖରେ ଅସ୍ତ୍ରଶସ୍ତ୍ର ବି ନ ଥିଲା । ତେଣୁ ପ୍ରବଳ ପରାକ୍ରମୀ, ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଇଂରେଜ ସେନାବାହିନୀର ମୁକାବିଲା କରିବା ଅସମ୍ଭବ ବୋଲି ସେ ଉପଲବ୍ଧି କଲେ । ସେ ତେଣୁ ଏକ ନୂଆ ପନ୍ଥା ବାହାର କଲେ । ତାହାହେଲା ବ୍ରିଟିଶଶାସକମାନଙ୍କ ସହିତ ଅସହଯୋଗ । ସେ ତାଙ୍କର ଯୋଜନା ବା ନୂଆ କର୍ମପନ୍ଥା ବିଷୟରେ ଇଂରେଜ କର୍ତ୍ତୃପକ୍ଷଙ୍କୁ ଜଣାଇଦେଲେ – ''ସେମାନଙ୍କର ନୂତନ କର୍ମପନ୍ଥା ହେଉଛି ଯେ ସେମାନେ ବଣ ଜଙ୍ଗଲକୁ ପଳାଇଯାଇ ସେଠାରେ ବସବାସ କରିବେ । ଫଳରେ ଚାଷବାସ ହୋଇପାରିବ ନାହିଁ । ଖଜଣା ଆଦାୟ ବି ବନ୍ଦ ହେବ । ତେଣୁ ଶାସନ ଭୁଷୁଡ଼ି ପଡ଼ିବ । ବ୍ୟବସାୟୀ ବ୍ରିଟିଶମାନେ ଆପେ ଆପେ ଓଡ଼ିଶା ଛାଡ଼ି ଚାଲିଯିବେ ।''

ଜଗବନ୍ଧୁ ଏହିପରିଭାବେ ଘୋର ଅରଣ୍ୟ ଭିତରେ ରହି ଘନ ଘନ ଆକ୍ରମଣ ଚଳାଇ ବ୍ରିଟିଶ ଶାସନକୁ ପଙ୍ଗୁ କରିଦେବାକୁ ଉଦ୍ୟମ କଲେ ।

ଜଗବନ୍ଧୁ ବ୍ରିଟିଶ ଶାସକ ମେଲ ଭିଲେଙ୍କ ପାଖକୁ ଏକ ପତ୍ର ଦେଲେ । ସେଥିରେ ସେ ଲେଖିଥିଲେ – ''କଟକ ପ୍ରଦେଶ ବ୍ରିଟିଶ ସାମରିକ ବାହିନୀଦ୍ୱାରା ଅଧିକୃତ ହେବାର ଚଉଦ ବର୍ଷ ହୋଇଗଲାଣି × × ଯଦି ରାଜାଙ୍କୁ ପରମ୍ପରା

ଅନୁସାରେ ତାଙ୍କ ରାଜ୍ୟର ଅଧିକାରରେ ରଖାଯାଇଥାଆନ୍ତା, ତାହାହେଲେ ରାଜ୍ୟର ତିନି ଲକ୍ଷ ଲୋକ ସମୃଦ୍ଧିଶାଳୀ ଓ ଆନନ୍ଦିତ ହୋଇପାରିଥାନ୍ତେ; କିନ୍ତୁ ଗାଦିଶୂନ୍ୟ ହେବାରେ ସେମାନେ ଧ୍ୱଂସ ହୋଇଗଲେ । ଦାରୁଠେଙ୍ଗଠାରୁ ଛତ୍ରଗଡ଼ ପର୍ଯ୍ୟନ୍ତ ସମସ୍ତ ରାଜ୍ୟକୁ ନିଲାମଦାରଙ୍କ ସହ ବନ୍ଦୋବସ୍ତ କରିଦିଆଗଲା ... ଇତ୍ୟାଦି । ଯେଉଁଠାରେ ପାଞ୍ଚ ଟଙ୍କାର ସମ୍ବଳ ଅଛି ସେଠାରେ ଏହି ନିଲାମଦାରମାନେ ପନ୍ଦର ଟଙ୍କାର ଦାବି କଲେ । ଲୁଣ ଦାମ ଏକ ପଣରୁ ପାଞ୍ଚ ପଣ ହେଲା । ରୟତମାନଙ୍କ ଅବସ୍ଥା ଏତେ ଖରାପ ହେଲା ଯେ ସେମାନେ ଶାଗ ଓ ପାଣି ଖାଇ ଜୀବନ ଧାରଣ କଲେ । ସେମାନଙ୍କ ଭିତରେ ଜଣଙ୍କର ସୁଦ୍ଧା ପାଣି ପିଇବାପାଇଁ ବାସନ ଖଣ୍ଡିଏ ରହିଲା ନାହିଁ । ଶେଷରେ ରାଜ୍ୟର ଲୋକମାନେ (ସେମାନଙ୍କର ଦରିଦ୍ର ଓ ଅନାଥ ଅବସ୍ଥା ପରି ଆମର ଅବସ୍ଥା ହୋଇଥିବାରୁ) ଦଳ ବାନ୍ଧି ଆମଠାକୁ ଆସିଲେ ଓ କହିଲେ, ''ତୁମ୍ଭେମାନେ, ମହାରାଜା ଓ ଆମ୍ଭେମାନେ ଦୁର୍ଦ୍ଦଶାର ନିମ୍ନତମ ସୋପାନରେ ଆସି ପହଞ୍ଚିଗଲେଣି । ବର୍ତ୍ତମାନ ଆମ୍ଭର ପରିକଳ୍ପନା – ଚାଲ, ସମସ୍ତେ ଜଙ୍ଗଲକୁ ଚାଲିଯିବା ଓ ସେଠାରେ ନିବାସ କରିବା । ଏହାଦ୍ୱାରା ଜମି ପଡ଼ିଆ ପଡ଼ିବ ଓ ଖଜଣା ଆଦାୟ ହୋଇପାରିବ ନାହିଁ – ଏହା ଦେଖି, ସମ୍ଭବ ହୋଇପାରେ, ଇଂରେଜମାନେ ଆମ୍ଭମାନଙ୍କ ଅବସ୍ଥାର ବିଚାର କରିବାପାଇଁ ବାଧ ହୋଇପାରନ୍ତି ... ।''

ଜଗବନ୍ଧୁଙ୍କ ଯୋଜନା ଅନୁଯାୟୀ ଖୋରଧା ପାଇକ ତଥା ଅଧିବାସୀମାନେ ବଣଜଙ୍ଗଲକୁ ପଳାଇଲେ । ବାଣପୁର ଏହି ପ୍ରତିରୋଧର ପ୍ରଥମ ସ୍ଥାନ ହେଲା । ପାଇକମାନେ ପୁଣି ସରକାରୀ ଅଫିସ ଓ ସୈନ୍ୟ ଛାଉଣୀ ପ୍ରଭୃତି ଉପରେ ଆକ୍ରମଣ କଲେ । ଅଫିସରେ ଅଗ୍ନିସଂଯୋଗ ମଧ୍ୟ କଲେ । ଇଂରେଜମାନଙ୍କୁ ଖଜଣା ନ ଦେବାପାଇଁ ସରବରାକାରମାନଙ୍କୁ ମତାଇଲେ । ଜଗବନ୍ଧୁ ଘୁମୁସର, ବାଣପୁର ପ୍ରଭୃତି ଅଞ୍ଚଳର ଘଞ୍ଚ ଅରଣ୍ୟ ମଧ୍ୟରେ ରହି ବିଦ୍ରୋହୀମାନଙ୍କୁ ତାଲିମ ଦେଲେ । କେଉଁଠାରେ କିପରି ଭାବରେ ଆକ୍ରମଣ କରାଯିବ ସେ ବିଷୟରେ ଯୋଜନା କରୁଥିଲେ । ୧୮୧୯ ମେ ମାସ ୧୦ ତାରିଖରେ ଖୋରଧାର ଜଏଣ୍ଟ ସେ ମାଜିଷ୍ଟ୍ରେଟ ଫରେଷ୍ଟର ଗଞ୍ଜାମର ମାଜିଷ୍ଟ୍ରେଟଙ୍କୁ ଜଣାଇଲେ – ''ଘୁମୁସର ଓ ଖଲିକୋଟ ଅଞ୍ଚଳର କେତେକ ପାଣ ଓ କନ୍ଧ ବାଣପୁର ସୀମାନ୍ତ ଅଞ୍ଚଳବର୍ତ୍ତୀ ଗ୍ରାମମାନଙ୍କ ଉପରେ ବାରମ୍ବାର ଚଢ଼ାଉ କରି ଲୁଟତରାଜ, ଗୃହଦାହ ଇତ୍ୟାଦି ଘଟାଉଛନ୍ତି ଏବଂ ସେହି ଗ୍ରାମମାନଙ୍କରୁ ୧୫୦ ଗୃହପାଳିତ ପଶୁ ଅପହରଣ କରିନେଇଛନ୍ତି । ତେଣୁ ଗଞ୍ଜାମ ପ୍ରଶାସକ ସେମାନଙ୍କ ବିରୋଧରେ ଜରୁରୀ ପଦକ୍ଷେପ ନେବା ଦରକାର ।''

୧୮୧୯ ମସିହା ଜୁଲାଇ ମାସ ୯ ତାରିଖରେ ଖୋରଧା ମାଜିଷ୍ଟ୍ରେଟ ଫରେଷ୍ଟରଙ୍କ କମିସନର କେର୍‌ଙ୍କୁ ପତ୍ର ଦେଇ ଜଣାଇଥିଲେ – ''ବକ୍‌ସିଙ୍କ ପ୍ରରୋଚନାକ୍ରମେ ଘୁମୁସରର ଶିବ ନାୟକଙ୍କ ନେତୃତ୍ୱରେ କନ୍ଧ ଓ ପାଣମାନେ ବାଣପୁର ଅଞ୍ଚଳରେ ଉପଦ୍ରବ ଘଟାଉଛନ୍ତି ...''

ପୂର୍ବରୁ ବାଣପୁରର ସ୍ଥିତାବସ୍ଥା ଫେରିଆସିଥିବାରୁ ୧୮୧୮ ମସିହା ଅପ୍ରେଲ ମାସ ୧୦ ତାରିଖରେ ବାଣପୁର ଅଞ୍ଚଳରୁ ସାମରିକ ଆଇନ ଉଠି ଯାଇଥିଲା । ମାତ୍ର ବିଦ୍ରୋହୀମାନଙ୍କ ତତ୍‌ପରତା ବୃଦ୍ଧି ପାଇଲା । ଫଳରେ ବାଣପୁରରେ ପୁନର୍ବାର ସାମରିକ ଆଇନ ଜାରି ହେଲା । ବାଣପୁରରେ ଅବସ୍ଥାପିତ ହେଲେ ସାମରିକ ଅଫିସର ବେଲ୍ । ସେ ପ୍ରଧାନ କନ୍ଧ ସର୍ଦ୍ଦାର ବଜରଙ୍ଗ ସିଂହଙ୍କୁ ଧରିଲେ ଓ ଅନ୍ୟମାନଙ୍କୁ ଧରାଇଦେବାପାଇଁ ବଜରଙ୍ଗଙ୍କୁ ପ୍ରବର୍ତ୍ତାଇଲେ । ୧୮୧୮ ଅଗଷ୍ଟ ମାସ ବେଳକୁ ବେଲ୍ ପ୍ରାୟ ତିନି ଶହ ବିଦ୍ରୋହୀଙ୍କୁ ଧରିବାରେ କ୍ଷମ ହେଲେ । ଫଳରେ ବାଣପୁର, ଖଲିକୋଟ ଓ ଛତ୍ରଗଡ଼ ଅଞ୍ଚଳରେ ଏହି ଅଶାନ୍ତ ପରିସ୍ଥିତି ଆୟତ୍ତାଧୀନ ହେଲା ।

ପାଇକମାନେ ଖୋରଧା ଅଞ୍ଚଳରେ ପୁଣି ଲୁଟତରାଜ ଆରମ୍ଭ କରିଦେଲେ । ଅସନ୍ତୁଷ୍ଟ ଦଳାଇ, ଦଳବେହେରାମାନେ ଗାଁ ଗାଁରେ ପଶି ଲୋକମାନଙ୍କଠାରୁ ସାହାଯ୍ୟ ଭିକ୍ଷା କରୁଥିଲେ । ଗାଁ ଲୋକେ ବି ବିଦ୍ରୋହୀମାନଙ୍କ ପ୍ରତି ସହାନୁଭୂତି ଦେଖାଇ ଟଙ୍କା ଓ ଖାଦ୍ୟସାମଗ୍ରୀ ଦେଉଥିଲେ । ଘୋର ବଣ ଜଙ୍ଗଲରେ ବିଦ୍ରୋହୀମାନେ ଆଡ୍‌ଡା କରି ସେଠାରୁ ଗ୍ରାମମାନଙ୍କ ଭିତରେ ଅତର୍କିତ ପଶି ଏହି କାଣ୍ଡ ମାନ କରୁଥିଲେ । କେତେକ କ୍ଷେତ୍ରରେ ଧମକେଇ ମାଗଣ ନେଉଥିଲେ । ପ୍ରାୟ ପ୍ରତ୍ୟେକ ଗ୍ରାମରୁ ପାଇକ ମାଗଣ ଥିଲା ।

ପିପିଲି ଓ ପୁରୀ ଅଞ୍ଚଳରେ ମଧ୍ୟ ଏହି ଅଶାନ୍ତି ଲାଗି ରହିଥିଲା । ପିପିଲି ଅଞ୍ଚଳରେ ଏପରି କୌଣସି ରାତି ନ ଥିଲା ଯେଉଁ ରାତିରେ କି କୌଣସି ନା କୌଣସି ଗ୍ରାମରେ ଲୁଟତରାଜ ହେଉ ନ ଥିଲା ।

ଖୋରଧା ଅଞ୍ଚଳରେ ଏହା ମଧ୍ୟ କ୍ରମାଗତ ଭାବେ ଲାଗିରହିଲା । ବକ୍‌ସିଙ୍କ ଜମିଦାରୀ ରୋଡ଼ଙ୍ଗରେ ମଧ୍ୟ ବହୁକାଳ ଧରି ଏହା ଲାଗି ରହିଲା । ସ୍ଥାନୀୟ ବିଦ୍ରୋହ ସମର୍ଥକମାନେ ବାବାଜି ବା ଭିକାରି ବେଶରେ ଖବର ଆଣି ଜଗବନ୍ଧୁଙ୍କୁଦେଉଥିଲେ ।

ରୋଡ଼ଙ୍ଗ କିଲାର ଭୁଗୁନି ଦାସ ବକ୍‌ସି ଜଗବନ୍ଧୁଙ୍କୁ ଗୋପନରେ ଖାଦ୍ୟଦ୍ରବ୍ୟ ଯୋଗାଇ ଦେଇଆସୁଥିଲେ । କୌଣସି ସୂତ୍ରରୁ ଏ ଖବର ପାଇ କମିସନରଙ୍କ ସଚିବ ଷ୍ଟାଲିଂ ମାଜିଷ୍ଟ୍ରେଟଙ୍କୁ ଭୁଗୁନି ଦାସଙ୍କୁ ସତର୍କ କରିଦେବାକୁ ପତ୍ର ଦେଲେ ।

ଜଗବନ୍ଧୁ ମଧ୍ୟ ଆଉ କୌଣସି ଆଡୁ ଖାଦ୍ୟପଦାର୍ଥ ନ ପାଇପାରନ୍ତି ସେଥିପାଇଁ ମେଲିଭିଲ୍ କଟକଣା ଜାରି କଲେ ।

ବିଦ୍ରୋହୀମାନେ ମଧ୍ୟ ଜମିଦାର ଓ ରୟତମାନଙ୍କୁ ସରକାରଙ୍କୁ ଖଜଣା ନ ଦେବାପାଇଁ ପ୍ରବର୍ତ୍ତାଇଲେ । ସରକାର ବର୍ଷକୁ ବର୍ଷ କରୁଥିବା ବନ୍ଦୋବସ୍ତରେ ମଧ୍ୟ ସହଯୋଗ ନ କରିବାକୁ ପ୍ରବର୍ତ୍ତାଉଥିଲେ ।

ଜନସାଧାରଣଙ୍କ ସହଯୋଗ ଓ ସହାନୁଭୂତି ଫଳରେ କ୍ରମାଗତ ଅଶାନ୍ତ ପରିସ୍ଥିତି ବାଣପୁର, ବୋଲଗଡ଼, ନୟାଗଡ଼, ଟାଙ୍ଗୀ ପ୍ରଭୃତି ଅଞ୍ଚଳରେ ଲାଗିରହିଲା । ଇଂରେଜ ସରକାରଙ୍କ ବିଭିନ୍ନ ସ୍ଥାନରେ ସୈନ୍ୟ ମୁତୟନ ସତ୍ତ୍ୱେ ଏହା ବନ୍ଦ ହେଲା ନାହିଁ । ସେମାନେ ପ୍ରତ୍ୟକ୍ଷ ସଂଗ୍ରାମରେ ଜୟଲାଭ କରୁଥିଲେ । ମାତ୍ର ଗତାନୁଗତିକ ସୈନ୍ୟବାହିନୀଦ୍ୱାରା ଗରିଲା ଯୁଦ୍ଧକୁ ଆୟତ୍ତ ନ କରିପାରିବାରୁ ଚିନ୍ତିତ ହୋଇପଡ଼ିଲେ । ଏ ଦିଗରେ ବିଫଳତା ତାଙ୍କ ମନରେ ଘୋର ନୈରାଶ୍ୟ ଯେ ସୃଷ୍ଟି କଲା, ଏଥିରେ ସନ୍ଦେହ ନାହିଁ ।

ତ୍ରୟୋଦଶ ପରିଚ୍ଛେଦ

# ଗିରଫ ଉଦ୍ୟମ

ଜଗବନ୍ଧୁଙ୍କ ଅନୁସୃତ ଗରିଲା ଯୁଦ୍ଧ ବହୁକାଳ ଧରି ଲାଗିରହିବା ଫଳରେ ବ୍ରିଟିଶ ସରକାର ଘୋର ଆର୍ଥିକ କ୍ଷତିର ସମ୍ମୁଖୀନ ହେଲେ । ଶାସନଗତ ଅସ୍ଥିରତା ମଧ୍ୟ ଲାଗି ରହିଲା । ଜଗବନ୍ଧୁଙ୍କ ଚାଲିଚଳଣ ପ୍ରତି ନଜର ଦେଇ ଶୀଘ୍ର ଗିରଫ କରିବାପାଇଁ ନାନା ଯୋଜନା କରାଗଲା । ଜଗବନ୍ଧୁ କିନ୍ତୁ ସେସବୁକୁ ଭ୍ରୂକ୍ଷେପ ନ କରି ନିଜ କାର୍ଯ୍ୟପନ୍ଥା ଗ୍ରହଣ କରି ଚାଲିଲେ । ତାଙ୍କୁ ପ୍ରଥମରେ ରାଜା, ଜମିଦାରମାନେ ସାହାଯ୍ୟ ଦେଉଥିଲେ । ଶେରଗଡ଼ ରାଜା ଜଗବନ୍ଧୁଙ୍କର ଶ୍ୱଶୁର ଥିଲେ । ସେ ତେଣୁ ଜଗବନ୍ଧୁଙ୍କୁ ସବୁ ପ୍ରକାର ସାହାଯ୍ୟ ଦେବା ସ୍ୱାଭାବିକ । ଘୁମୁସର ଓ ଦଶପଲ୍ଲା ରାଜା ଜଗବନ୍ଧୁଙ୍କର ପରମ ବନ୍ଧୁ ଥିଲେ । ଘୁମୁସର ରାଜା ଥିଲେ ଶ୍ରୀକର ଭଞ୍ଜ । ସେ ପ୍ରବଳ ଇଂରେଜ ବିରୋଧୀ ଥିଲେ । ସେ ଜଗବନ୍ଧୁଙ୍କୁ ସବୁମତେ ସାହାଯ୍ୟ କରୁଥିଲେ । ଘୁମୁସର ଅଞ୍ଚଳର କୌଣସି ଗୁପ୍ତ ସ୍ଥାନରେ ରହିଥିବା ଖବର ବ୍ରିଟିଶମାନେ ପାଇ ସେ ସ୍ଥାନ ଚଢ଼ାଉ କରିବାକୁ ଗଲେ ଶ୍ରୀକର ଭଞ୍ଜ ଆଗୁଆ ଖବର ଜଗବନ୍ଧୁଙ୍କୁ ଦେଉଥିଲେ । ଫଳରେ ଜଗବନ୍ଧୁ ସେଠାରୁ ପଳାଇବାକୁ କ୍ଷମ ହେଉଥିଲେ । ନୟାଗଡ଼ ରାଜା ଇଂରେଜ ସରକାରଙ୍କ ସହ ମୈତ୍ରୀ ଚୁକ୍ତିରେ ଆବଦ୍ଧ ଥିଲେ ମଧ୍ୟ ଜଗବନ୍ଧୁଙ୍କୁ ଗୁପ୍ତ ଭାବରେ ସାହାଯ୍ୟ ଦେଉଥିଲେ । ଗଞ୍ଜାମର ସବୁ ଜମିଦାରଙ୍କ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ସାହାଯ୍ୟ ମଧ୍ୟ ଜଗବନ୍ଧୁ ପାଉଥିଲେ । ଇଂରେଜ ସରକାର ବକ୍ସିଙ୍କ ପ୍ରତି ଅନ୍ୟାୟ କରିଥିବା ସମସ୍ତେ ହୃଦୟଙ୍ଗମ କରିଥିଲେ । ତେଣୁ ତାଙ୍କର କେହି ଅନିଷ୍ଟ କରିବାକୁ ଚାହୁଁ ନ ଥିଲେ ।

**କବୀରପୁର ଚଢ଼ାଉ** – ୧୮୧୮ ଜୁଲାଇ ଆଡ଼କୁ ଜଗବନ୍ଧୁ ବୌଦ ସୀମାନ୍ତ ଘୁମୁସରରେ ଥିଲେ । ଘୁମୁସର ରାଜ୍ୟ ଭିତରେ ଚକାପାଦୁ ଓ ଓଡ଼୍ ଦେଶ ମଧ୍ୟରେ କବୀରପୁର (କବିସୂର୍ଯ୍ୟପୁର)ରେ ଜଗବନ୍ଧୁ ରହୁଥିବା ସରକାର ଖବର ପାଇଲେ ।

ବୌଦ ରାଜାଙ୍କ ସହାୟତା ବିନା ବକ୍ସିଙ୍କୁ ଧରିବା ଅସମ୍ଭବ ମନେ କରି ସରକାର ବୌଦ ରାଜାଙ୍କ ସହାୟତା ଲୋଡ଼ିଲେ । ସେତେବେଳେ ବୌଦ ରାଜାଙ୍କଠାରୁ ରାଜ୍ୟ ବ୍ରିଟିଶ ସରକାର କାଢ଼ି ନେଇ ନିଜେ ପରିଚାଳନା କରୁଥିଲେ । ବକ୍ସିଙ୍କୁ

ଧରାଇଦେବାରେ ସାହାଯ୍ୟ କଲେ ତାଙ୍କ ରାଜ୍ୟ ଫେରାଇ ଦିଆଯିବ ବୋଲି ବୌଦ ରାଜାଙ୍କୁ ପ୍ରତିଶ୍ରୁତି ଦିଆଗଲା । ବୌଦ ରାଜା ଏଥିରେ ରାଜି ହେଲେ । ଜଗବନ୍ଧୁଙ୍କୁ ଧରିବାର ସମସ୍ତ ଦାୟିତ୍ୱ ବୌଦ ରାଜାଙ୍କୁ ଦିଆଗଲା । ତାଙ୍କୁ ସାହାଯ୍ୟ କରିବାପାଇଁ ରୁଦ୍ଲେଙ୍କୁ ବୌଦ ପଠାଗଲା ।

ବୌଦ ରାଜାଙ୍କ ପରାମର୍ଶ ଅନୁସାରେ ସ୍ଥିର ହେଲା ଯେ ବୌଦ ରାଜାଙ୍କର ସୈନ୍ୟମାନେ ସରକାରୀ ସିପାହିମାନଙ୍କ ସହ ମିଶି ବକ୍ସିଙ୍କ ରହିବା ସ୍ଥାନ ଆକ୍ରମଣ କରିବେ । ବକ୍ସି ବା ତାଙ୍କ ସହଯୋଗୀ ଯଦି ଖସି ପଳାଇ ଯାଇ ନୟାଗଡ଼, ଦଶପଲ୍ଲା ବା ଆଠମଲ୍ଲିକ ଅଞ୍ଚଳରେ ଆଶ୍ରୟ ନିଅନ୍ତି ତେବେ ସେସବୁ ଅଞ୍ଚଳର ରାଜାମାନେ ବିହିତ କାର୍ଯ୍ୟାନୁଷ୍ଠାନ କରିବେ । ନୟାଗଡ଼, ଦଶପଲ୍ଲା ପ୍ରଭୃତିର ରାଜାମାନେ ଜଗବନ୍ଧୁଙ୍କୁ ଧରାଇବାପାଇଁ ସେପରି ଆଗ୍ରହ ଦେଖାଉ ନ ଥିଲେ । ସରକାର ତେଣୁ ସେସବୁର ରାଜାମାନଙ୍କୁ ସତର୍କ କରାଇଦେଲେ ଯେ ସେମାନେ ସେଥିରେ ସହଯୋଗ ନ କଲେ ତାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ହେବ ।

୧୮୧୮ ସେପ୍ଟେମ୍ବର ମାସ ୧ ତାରିଖରେ ରୁଦ୍ଲେ ଟାଣୁଆ ସୈନ୍ୟ ଦଳ ସହ ସମ୍ବଲପୁରରୁ ବାହାରି ବୌଦରେ ପହଞ୍ଚିଲେ । ବୌଦ ଅଞ୍ଚଳକୁ ଖାସ୍ କରାଯିବାପାଇଁ ରୁଦ୍ଲେ ଆସିଛନ୍ତି ବୋଲି ଭ୍ରମଧାରଣା ସୃଷ୍ଟି କରାଗଲା । ଆକବର ଅଲ୍ଲି, ଜଙ୍ଗମଲାଲ ନାମକ ଦୁଇ ଜଣ ତହସିଲଦାର ମାଲଗୁଜାରୀ କାଗଜ ଧରି ତଦାରଖ କରିବାରେ ଲାଗିଲେ । ବକେୟା ଖଜଣା ଆଦାୟପାଇଁ ପ୍ରଜାମାନଙ୍କ ଉପରେ ପରୱାନା ମଧ୍ୟ ଜାରି କରାଗଲା । ପୂର୍ବ ଯୋଜନା ଅନୁଯାୟୀ ରୁଦ୍ଲେ ବୌଦ ରାଜାଙ୍କୁ କମ୍ ଦେଖାସାକ୍ଷାତ୍ କଲେ । ସରକାରୀ ସୈନ୍ୟଦଳକୁ ବୌଦ ନିକଟସ୍ଥ ତେଲିଗଞ୍ଜଠାରେ ନ ରଖି ଅନ୍ୟ ସ୍ଥାନରେ ରଖାଗଲା । ସେପ୍ଟେମ୍ବର ମାସ ୨ ତାରିଖ ରାତିରେ ବକ୍ସିଙ୍କ ରହିବା ସ୍ଥାନ (କବୀରପୁର) ଉପରେ ଅତର୍କିତ ଆକ୍ରମଣ କରିବାର ସ୍ଥିର ହେଲା । ଜଗବନ୍ଧୁ ଧରା ପଡ଼ିଲେ ତାଙ୍କୁ ଯେପରି ଅବିଳମ୍ବେ ମହାନଦୀ ବାଟେ କଟକ ନିଆଯିବ, ତା'ର ବ୍ୟବସ୍ଥା ମଧ୍ୟ ହେଲା । ଶହେ ଦେଢ଼ ଶହ ଲୋକଙ୍କୁ ନେଇପାରିଲା ଭଳି ବଡ଼ ବଡ଼ ଡଙ୍ଗାମାନ ପ୍ରସ୍ତୁତ ଅବସ୍ଥାରେ ରଖାଯାଇଥିଲା ।

ରୁଦ୍ଲେ ଆଗରୁ ଭୂପଭରଣ ସିଂହଙ୍କ ରହିବା ସ୍ଥାନକୁ ପଠାଇଥିଲେ । ଭୂପଭରଣ ପୂର୍ବରୁ ବକ୍ସିଙ୍କ ଦେହରକ୍ଷୀ ଓ ସେନାନାୟକ ଭାବେ କାର୍ଯ୍ୟ କରୁଥିଲେ । ସେ କିନ୍ତୁ ଧରା ପଡ଼ିଯିବାରୁ ସରକାରଙ୍କଦ୍ୱାରା ବନ୍ଦୀ ହେଲେ । ଜଗବନ୍ଧୁଙ୍କୁ ଧରାଇଦେବାପାଇଁ ସେ ପ୍ରତିଶ୍ରୁତି ଦେବାରୁ ତାଙ୍କୁ ମୁକ୍ତ କରାଯାଇଥିଲା । ବକ୍ସି ଯଦି ଖସି ପଳାଇଯିବାକୁ ବସନ୍ତି, ତା'ହେଲେ ତାଙ୍କୁ ଗୁଳି କରି ହତ୍ୟା କରିବାକୁ ନିର୍ଦ୍ଦେଶ ଦିଆଗଲା ।

ସେପ୍ଟେମ୍ବର ମାସ ୧୧ ତାରିଖ ରାତ୍ରିରେ ବକ୍‌ସିଙ୍କ ରହିବା ସ୍ଥାନ ଉପରେ ଚଢ଼ାଉ ହେବାର ଯୋଜନା ହୋଇଥିଲା । ମାତ୍ର ତାହା ପୂର୍ବରୁ ବୌଦରାଜା ତାଙ୍କ ରାମବଂଶୀଙ୍କୁ ବକ୍‌ସିଙ୍କ ପାଖକୁ ଖବର ପଠାଇ ସତର୍କ କରାଇଦେଲେ । କିନ୍ତୁ ଇଂରେଜମାନଙ୍କ ବିଶ୍ୱାସଭାଜନ ହେବା ନିମନ୍ତେ ବକ୍‌ସିଙ୍କୁ ଧରିବାପାଇଁ ଦେଢ଼ଶହ ବରକନ୍ଦାଜ ଇଂରେଜ ସେନାଧକ୍ଷଙ୍କ ପାଖକୁ ପଠାଇଥିଲେ । ୧୧ ତାରିଖ ପୂର୍ବରୁ ବକ୍‌ସି ଓ ତାଙ୍କ ସହଯୋଗୀମାନେ କବୀରପୁର ତ୍ୟାଗ କରି ଏକ ନିରାପଦ ସ୍ଥାନକୁ ପଳାଇ ଯାଇଥିଲେ ।

ସରକାରୀ ସୈନ୍ୟମାନେ ୧୨ ତାରିଖରେ କବୀରପୁର ଆକ୍ରମଣ କଲେ । ଦୁଇ ଜଣ ବକ୍‌ସିଙ୍କର ଚାକର ଶ୍ରେଣୀର ଲୋକ ପତି କୁଅଁର ଓ ହରି ସୁନ୍ଦରା କେବଳ ଧରାପଡ଼ିଲେ ।

ମେଜର ରଫସେଜ୍ ଏହି ଚରମ ବିଫଳତାପାଇଁ ଦୁଃଖ ପ୍ରକାଶକରି କମିସନର କେର୍‌ଙ୍କୁ ୧୮୧୯ ଜାନୁୟାରୀ ମାସ ୧୫ ତାରିଖରେ ଏକ ପତ୍ର ଦେଇଥିଲେ ।

୧୮୧୯ ଜୁନ ମାସ ଆଡ଼କୁ ମେଜର ରଫସେଜ୍ ଖବର ପାଇଲେ ଯେ ବକ୍‌ସି ଜଗବନ୍ଧୁ ବୌଦ ଅଞ୍ଚଳରେ ଆତ୍ମଗୋପନ କରିଛନ୍ତି ଓ ତାଙ୍କ ଆତ୍ମଗୋପନ ସମ୍ପର୍କରେ ବୌଦ ରାଜା ଅବଗତ ଅଛନ୍ତି । ରଫସେଜ୍ ପୁଣି ବୌଦ ରାଜାଙ୍କ ସହାୟତା ଲୋଡ଼ିଲେ ଏବଂ ତାଙ୍କ ସାହାଯ୍ୟରେ ଆଉ ଏକ ସାମରିକ ଅଭିଯାନର ଯୋଜନା କଲେ । ଏଥିରେ ସହାୟତା କରିବାପାଇଁ ଘୁମୁସର ରାଜାଙ୍କ ପରାମର୍ଶକ୍ରମେ ଘୁମୁସରର ଦୁଇ ଜଣ ପ୍ରଭାବଶାଳୀ ବ୍ୟକ୍ତି, ଯଥା – ଶ୍ୟାମ ବିଶୋଇ ଓ ଆଉ ଜଣେ କନ୍ଧ ଜମିଦାରଙ୍କୁ ନିଯୁକ୍ତ କରାଗଲା । ଏଥର ମେଜର୍ ରଫସେଜ ବକ୍‌ସିଙ୍କୁ ଧରିବାରେ ନିଶ୍ଚୟ ସଫଳତା ଲାଭ କରିବେ ବୋଲି କମସନରଙ୍କୁ ଜଣାଇଲେ ।

ବକ୍‌ସି ଜଗବନ୍ଧୁ ସେତେବେଳେ ବାଣପୁରଠାରୁ ୨୦ ମାଇଲ ଦୂର ଆଙ୍କୁଲୋ ଗ୍ରାମରେ ରହୁଥିଲେ । ଆଙ୍କୁଲୋଠାରୁ ଘୁମୁସରକୁ ପଳାଇବାପାଇଁ ଦୁଇ ଗୋଟି ରାସ୍ତା ଥିଲା । ଯୋଜନା ଅନୁଯାୟୀ ତିନି ଦଳ ସୈନ୍ୟ ବାଣପୁର, ଟାଙ୍ଗୀ ଓ ବୋଲଗଡ଼ରୁ ବାହାରିବେ । ସେମାନଙ୍କୁ ରଣପୁର, ନୟାଗଡ଼ ଓ ଖଲିକୋଟ ରାଜ୍ୟ ଭିତରେ ଯିବାକୁ ପଡୁଥିବାରୁ ସେସବୁ ଅଞ୍ଚଳର ରାଜାମାନଙ୍କୁ ପରୱାନା ଦିଆଯିବ । କଟକ ସେନାଧକ୍ଷ ଏହାକୁ ଜୁନ ମାସ ୩୦ ତାରିଖରେ କାର୍ଯ୍ୟକାରୀ କରିବାକୁ ସ୍ଥିର କଲେ । ପୂର୍ବ ଯୋଜନା ଅନୁସାରେ ୩୦ ତାରିଖ ଦିନ ଅଭିଯାନ ଆରମ୍ଭ ହେଲା । ତିନି ଦଳ ସୈନ୍ୟ ତିନି ଆଡୁ ବାହାରିଲେ । ପ୍ରତ୍ୟେକ ଦଳକୁ ଜଣେ ଇଉରୋପୀୟ

ସେନାନାୟକ ପରିଚାଳିତ କଲେ । ସେମାନେ ପମ୍ପାରି ନିକଟରେ ବକ୍‌ସିଙ୍କ ଅନୁଚରମାନେ ରହିଥିବା ଘାଟିକୁ ଆକ୍ରମଣ କଲେ । ଜଗବନ୍ଧୁ କିନ୍ତୁ ଆଗରୁ ସେ ଖବର ପାଇ ସେଠାରୁ ଖସି ପଳାଇଥିଲେ; କିନ୍ତୁ ତାଙ୍କର ବହୁ ସରଞ୍ଜାମ ବ୍ରିଟିଶ ସେନାବାହିନୀ ହାତରେ ପଡ଼ିଲା । ଜଗବନ୍ଧୁଙ୍କ ୧୯ଜଣ ଅନୁଗାମୀଙ୍କୁ ଗିରଫ କରାଯାଇଥିଲା । ଜଗବନ୍ଧୁଙ୍କର ପ୍ରିୟ ହସ୍ତୀଟି ମଧ୍ୟ ସେମାନଙ୍କ ହାତରେ ପଡ଼ିଲା । ଏହାଦ୍ୱାରା ବ୍ରିଟିଶ ସରକାର କେତେକାଂଶରେ ସଫଳତା ହାସଲ କଲେ ମଧ୍ୟ ଜଗବନ୍ଧୁ ଧରା ହୋଇପାରୁ ନ ଥିବାରୁ ନୈରାଶ୍ୟରେ ଭାଙ୍ଗି ପଡ଼ିଥିଲେ । ଫରେଷ୍ଟର ଗଞ୍ଜାମ ମାଜିଷ୍ଟ୍ରେଟ୍‌ଙ୍କୁ ଅନୁରୋଧ କଲେ ସେ ବକ୍‌ସିଙ୍କୁ ଧରାଇଦେବାକୁ ଘୁମୁସର ରାଜାଙ୍କୁ ପ୍ରବର୍ତ୍ତାନ୍ତୁ ।

**ପାନବରଜରେ ଚଢ଼ାଉ** – ବକ୍‌ସି ଜଗବନ୍ଧୁ ଖୋରଧା ଅନ୍ତର୍ଗତ ପାନବରଜଠାରେ ରହିଥିବାର ଖବର କୌଣସି ସୂତ୍ରରୁ ବ୍ରିଗେଡିୟର ଥୋମାସ ପାଇଲେ । ଖୋରଧାର ବିଭିନ୍ନ ସ୍ଥାନରୁ ସୈନ୍ୟ ପଠାଇ ପାନବରଜ ଗ୍ରାମ ଉପରେ ଅତର୍କିତ ଭାବେ ଚଢ଼ାଉକଲେ । କିନ୍ତୁ ବକ୍‌ସି ଜଗବନ୍ଧୁ ଆଶ୍ଚର୍ଯ୍ୟଜନକ ଭାବେ ସେ ସ୍ଥାନରୁ ଖସି ପଳାଇଲେ । ସେଠାରେ ଜଗନ୍ନାଥ ରାୟ ନାମକ ତାଙ୍କର ଜଣେ ଅନୁଗାମୀ ଧରାପଡ଼ିଲେ । ଜଗବନ୍ଧୁ ତରବରରେ ମଧ୍ୟ ଏକ ଗଣ୍ଠିଲି ଛାଡ଼ି ଦେଇଯାଇଥିଲେ । ଜବତ୍ ହୋଇଥିବା ଗଣ୍ଠିଲି ଭିତରେ ପ୍ରାୟ ଏକଫୁଟ ଲମ୍ବ, ଅଧଫୁଟ ଓସାର ଓ ୩ ଇଞ୍ଚ ଉଚ୍ଚତା ବିଶିଷ୍ଟ ଏକ ଧୂସର ରଙ୍ଗର ବାକ୍ସ ଥିଲା । ମାତ୍ର ତାହା ଆଶ୍ଚର୍ଯ୍ୟଜନକଭାବେ ଉଭାନ୍ ହୋଇଯାଇଥିଲା । ବକ୍‌ସି ଜଗବନ୍ଧୁଙ୍କର ଜଣେ ଭୃତ୍ୟ ବାଣପୁରରେ ଧରାପଡ଼ି ଅଟକ ହେଲେ । ତାଙ୍କ ବୟାନ ଅନୁଯାୟୀ ସେହି ବାକ୍ସ ଭିତରେ ନିମ୍ନୋକ୍ତ ଜିନିଷମାନ ଥିଲା

୧. ଏକ ଗୋଟି ମୁକ୍ତାଖଚିତ ରତ୍ନହାର

୨. ଦୁଇ ଗୋଟି ମୁକ୍ତାଖଚିତ ସ୍ୱର୍ଣ୍ଣ କର୍ଣ୍ଣାଭରଣ

୩. ୨ ଗୋଟି ମୁକ୍ତାଖଚିତ ସୁବର୍ଣ୍ଣର ମଣିବନ୍ଧାଭରଣ

୪. ୧୦୦ ଗୋଟି ସିକାମୋହର

(ଏହା ମୁଦ୍ରାଭାବେ ୧୭୭୩ରେ ଇଷ୍ଟଇଣ୍ଡିଆ କମ୍ପାନୀଦ୍ୱାରା ପ୍ରଚଳିତ ହୋଇଥିଲା) ଏବଂ

୫. ୧୦୦ ଗୋଟି କାମ୍ପାନୀ ଟଙ୍କା

ଧରାପଡ଼ିଥିବା ଅନୁଚରଙ୍କ ମଧ୍ୟରୁ ଜଣେ ଜଗବନ୍ଧୁ ନୟାଗଡ଼ ବାଟଦେଇ ବୌଦକୁ ପଳାଇ ଯାଇଥିବା କଥା ପ୍ରକାଶ କରିଥିଲେ ।

ଏହି ପାନବରଜ ଅଭିଯାନ କେତେ ପରିମାଣରେ ସଫଳ ହେଲେ ମଧ୍ୟ ବକ୍‌ସି ଧରା ପଡ଼ି ନ ଥିବାରୁ ସରକାରୀ ମହଲରେ ଭାଳେଣି ପଡ଼ିଗଲା ।

୧୮୨୦ ଓ ୧୮୨୧ ଦୁଇ ବର୍ଷ ମଧ୍ୟରେ ବ୍ୟାପକ ଉଦ୍ୟମ ଓ ଚଢ଼ାଉ ହୋଇଥିଲେ ମଧ୍ୟ ବକ୍‌ସି ଜଗବନ୍ଧୁଙ୍କୁ ଧରିବା ସମ୍ଭବ ହୋଇ ନ ଥିଲା । ଜଗବନ୍ଧୁଙ୍କ ଲୋକପ୍ରିୟତା ଆଗରେ ସରକାରଙ୍କର ପ୍ରାଣାନ୍ତକ ପ୍ରଚେଷ୍ଟା ବିଫଳତାରେ ପରିଣତ ହେଲା ।

**ଜଗବନ୍ଧୁଙ୍କ କୁଟୁମ୍ବଙ୍କୁ ଗିରଫ** – ବାଣପୁରରେ ପାଣ ଓ କନ୍ଧମାନଙ୍କ ଲୁଟତରାଜ ବହୁକାଳ ଧରି ଚାଲିଥିଲା । ସରକାର ତାହାଙ୍କୁ ଦମନ କରିବାପାଇଁ ବାଣପୁର ସେନାଧ୍ୟକ୍ଷ ଏକ ନୂତନ ପନ୍ଥା ଗ୍ରହଣ କରିଥିଲେ । ତାହାକୁ ମୁଣ୍ଡ ଜାମିନ ରଖା (ହୋଷ୍ଟେଜ) ପନ୍ଥା କୁହାଯାଏ । ଏହା ଅନୁଯାୟୀ ବିଦ୍ରୋହୀଙ୍କ କୁଟୁମ୍ବଙ୍କୁ ଧରିଆଣି ଅଟକବନ୍ଦି କରି ରଖାଯାଉଥିଲା । ବାଣପୁରରେ ଅବସ୍ଥାପିତ ଲେଫଟନାଣ୍ଟ ବେଲ୍ କନ୍ଧ ପାଣମାନଙ୍କ ଲୁଟତରାଜ ବନ୍ଦ ପାଇଁ ଏହି ପନ୍ଥା ଗ୍ରହଣ କରିଥିଲେ । ଖଲିକୋଟ ଅଞ୍ଚଳର ଜଣେ ବିଦ୍ରୋହୀଙ୍କ ସ୍ତ୍ରୀଙ୍କୁ ଧରିଆଣି ସେ ଅଟକବନ୍ଦି ରଖିଲେ । ସେହି ସ୍ତ୍ରୀଙ୍କ ପିନ୍ଧା ଗହଣା ଦେଇ ଜଣେ ଲୋକଙ୍କୁ ଖଲିକୋଟ ପଠାଇଲେ । ସେହି ସ୍ତ୍ରୀଲୋକର ସ୍ୱାମୀଙ୍କୁ କୁହାଗଲା ଯେ ବିଦ୍ରୋହୀ କନ୍ଧମାନଙ୍କ ମଧ୍ୟରୁ ଜଣକୁ ହେଲେ ଧରାଇଦେଲେ ତା'ର ସ୍ତ୍ରୀକୁ ଖଲାସ କରିଦିଆଯିବ । କହିବା ବାହୁଲ୍ୟ ଯେ ଏହା କିଛିଟା ଫଳପ୍ରଦ ହୋଇଥିଲା । ବକ୍‌ସି ଜଗବନ୍ଧୁଙ୍କୁ ଧରିବାରେ ବାରମ୍ବାର ବିଫଳ ହୋଇ ଶେଷରେ ସରକାର ଏହି ପନ୍ଥା ଅବଲମ୍ବନ କଲେ ।

୧୮୧୯ ଅକ୍ଟୋବର ମାସ ମଝିଆଡ଼କୁ ଖୋରଧାର ମାଜିଷ୍ଟ୍ରେଟ ଉଇଲିୟମ ଫରେଷ୍ଟର ବାଣପୁରରେ ଥିବା ସେନାଧ୍ୟକ୍ଷ ଲେଫଟନାଣ୍ଟ ଆଗ୍ନ୍ୟୁଙ୍କ ଠାରୁ ଖବର ପାଇଲେ ଯେ ବକ୍‌ସିଙ୍କ ଦ୍ୱିତୀୟ ସ୍ତ୍ରୀ ଓ ତାଙ୍କର ଶିଶୁପୁତ୍ର ଗଞ୍ଜାମର ଆଠଗଡ଼ଠାରେ ଅବସ୍ଥାନ କରୁଛନ୍ତି । ତାଙ୍କର ପ୍ରଥମ ସ୍ତ୍ରୀ ଓ ଅନ୍ୟ ସମ୍ପର୍କୀୟମାନେ ଗଞ୍ଜାମ ସହରର ବୀରେନ୍ଦ୍ର ପଟ୍ଟନାୟକଙ୍କ ଘରେ ରହିଥିବା ଖବର ମଧ୍ୟ ପାଇଲେ । ଏ ଖବର ପାଇ ଫରେଷ୍ଟର ସେମାନଙ୍କୁ ସଙ୍ଗେ ସଙ୍ଗେ ଗିରଫ କରି ପଠାଇବାକୁ ଆଦେଶ ଦେଲେ । ଲେଫଟନାଣ୍ଟ ଆଗ୍ନ୍ୟୁ ଦଳେ ସୈନ୍ୟଙ୍କୁ ନେଇ ଆଠଗଡ଼ ଗଲେ ଓ ସେଠାରେ ଥିବା ଜଗବନ୍ଧୁଙ୍କ ଦ୍ୱିତୀୟା ସ୍ତ୍ରୀଙ୍କୁ ଗିରଫ କଲେ । ଗଞ୍ଜାମର କଲେକ୍ଟର ପ୍ରଥମା ସ୍ତ୍ରୀ ଓ ତାଙ୍କ ସମ୍ପର୍କୀୟମାନଙ୍କୁ ଆଗ୍ନ୍ୟୁଙ୍କ ହାତେ ସମର୍ପଣ କଲେ । ସେମାନଙ୍କୁ ଖୋରଧା ପଠାଗଲା ।

ବକ୍‌ସି ଜଗବନ୍ଧୁଙ୍କ କୁଟୁମ୍ବ ପ୍ରଥମେ ଖୋରଧାରେ ରହିଲେ । ସେମାନେ ହେଲେ –

୧. ବକ୍‌ସିଙ୍କ ପ୍ରଥମ ସ୍ତ୍ରୀ - ରାଧାମଣି ଜେମାଦେଈ
୨. ବକ୍‌ସିଙ୍କ ଦ୍ୱିତୀୟ ସ୍ତ୍ରୀ - ଚତୁରମଣି ଜେମାଦେଈ
୩. ବକ୍‌ସିଙ୍କ ପୋଷ୍ୟ ପୁତ୍ର - ଶ୍ୟାମସୁନ୍ଦର ରାୟ
୪. ବକ୍‌ସିଙ୍କ ଶିଶୁପୁତ୍ର - ଗୋପୀନାଥ ବିଦ୍ୟାଧର
୫. ବକ୍‌ସିଙ୍କ ପୋଷ୍ୟା କନ୍ୟା - ପଦ୍ମାଦେବୀ
୬. ବକ୍‌ସିଙ୍କ ଭାଇଙ୍କ କନ୍ୟା - ଅପର୍ଣ୍ଣା ଦେବୀ
୭. ବକ୍‌ସିଙ୍କ ଭାଇଙ୍କ ରକ୍ଷିତା ସ୍ତ୍ରୀ - ଗୁରୁବାରୀ

ଏମାନଙ୍କପାଇଁ ଖୋରଧାରେ ଗୋଟିଏ ଘର ଭଡ଼ା ନିଆଗଲା । ଭଡ଼ା ମାସିକ ଦଶ ଟଙ୍କା ଥିଲା । ସେମାନଙ୍କ ଭରଣପୋଷଣ ବ୍ୟବସ୍ଥା ମଧ୍ୟ ହେଲା । ଦ୍ୱିତୀୟ ସ୍ତ୍ରୀ ଓ ଶିଶୁପୁତ୍ରଙ୍କପାଇଁ ଦୈନିକ ୨ ଟଙ୍କା ଓ ପ୍ରଥମ ସ୍ତ୍ରୀ ଓ ସମ୍ପର୍କୀୟଙ୍କପାଇଁ ୧ଟଙ୍କା ହିସାବରେ ଭତ୍ତା ଦିଆଗଲା । ୧୮୨୦ ମେ ମାସଠାରୁ ଜଗବନ୍ଧୁଙ୍କ ପରିବାରବର୍ଗଙ୍କୁ କଟକର ବାରବାଟୀ ଦୁର୍ଗରେ ରଖାଗଲା । ସେମାନଙ୍କ ଭରଣପୋଷଣପାଇଁ ମାସିକ ୫୦ ଟଙ୍କା ଭତ୍ତା ଦିଆଗଲା । ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦେଖାଇବାକୁ ଖୋଦ୍ ଗଭର୍ଣ୍ଣର ଜେନେରାଲ ନିର୍ଦ୍ଦେଶ ଦେଇଥିଲେ ।

ଜଗବନ୍ଧୁଙ୍କ ପରିବାରବର୍ଗଙ୍କ ଯତ୍ନ ନେଉଥିବା ବାସୁଦେବ ପଟ୍ଟନାୟକ, ତାଙ୍କ ସ୍ତ୍ରୀ ଏବଂ ତାଙ୍କ ପରିବାରବର୍ଗଙ୍କୁ ମଧ୍ୟ କଟକରେ ରଖାଯାଇଥିଲା ।

ଜଗବନ୍ଧୁଙ୍କ କୁଟୁମ୍ବ ବାରବାଟୀ ଦୁର୍ଗରେ ରହିଲେ ମଧ୍ୟ ଜଗବନ୍ଧୁ ବିଚଳିତ ହୋଇ ନ ଥିଲେ । ସେ ସବୁ ହରାଇ ବନ୍ଧୁବାନ୍ଧବଶୂନ୍ୟ ହେଲେ ମଧ୍ୟ କେତେକ ମୁଷ୍ଟିମେୟ ଅନୁମାଗୀଙ୍କୁ ଧରି ସରକାରଙ୍କ ବିରୋଧରେ ସଂଗ୍ରାମ ଅବ୍ୟାହତ ରଖିଲେ ।

କ୍ରମେ ଗଭର୍ଣ୍ଣର ଜେନେରାଲଙ୍କ ହୃଦ୍‌ବୋଧ ହେଲା ଯେ ପରିବାରବର୍ଗଙ୍କୁ ଅଟକ ରଖିଲେ ମଧ୍ୟ ଜଗବନ୍ଧୁ ଧରା ଦେବେ ନାହିଁ । ଅଧିକ କାଳ ସେମାନଙ୍କୁ ଅଟକବନ୍ଦି କରି ରଖିବା ନିରର୍ଥକ । ତେଣୁ ସେପ୍ଟେମ୍ବର ମାସ ପହିଲାରେ ବକ୍‌ସିଙ୍କ ପରିବାରବର୍ଗଙ୍କୁ ସସମ୍ମାନେ ବାରବାଟୀ ଦୁର୍ଗରୁ ଖଲାସ କରିଦେବାକୁ ଆଦେଶ ଦେଲେ ।

ଏ ଆଦେଶ ପାଇବାମାତ୍ରେ ବକ୍‌ସିଙ୍କ କୁଟୁମ୍ବ ରୋଡ଼ଙ୍ଗକୁ ଫେରିଯିବାକୁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ବକ୍‌ସିଙ୍କ ଗୃହ ବାସୋପଯୋଗୀ ନ ହୋଇଥିବାରୁ ନଭେମ୍ବର ମାସ ୫ ତାରିଖ ପର୍ଯ୍ୟନ୍ତ ବାରବାଟୀ ଦୁର୍ଗରେ ରହିଲେ । ବକ୍‌ସିଙ୍କ ପରିବାରବର୍ଗଙ୍କୁ ସସମ୍ମାନେ ବାରବାଟୀ ଦୁର୍ଗରୁ ବିଦାୟ ଦିଆଗଲା ବୋଲି ଖୋରଧା ମାଜିଷ୍ଟ୍ରେଟ ଉଇଲ କିନସନ୍ କମିସନରଙ୍କ ସେକ୍ରେଟେରୀ ଷ୍ଟାର୍ଲିଙ୍ଗଙ୍କୁ ୧୮୨୦ ନଭେମ୍ବର ମାସ ୨୦ ତାରିଖରେ ଜଣାଇଲେ ।

**ପୁଣି ସଶସ୍ତ୍ର ବିଦ୍ରୋହ** – ସରକାରଙ୍କ ବହୁ ଦମନମୂଳକ ପଦକ୍ଷେପ କିନ୍ତୁ ଜଗବନ୍ଧୁଙ୍କ ଇଚ୍ଛାଶକ୍ତି ଆଗରେ ହାର ମାନିଲା । ୧୮୨୦ ଅଗଷ୍ଟ ମାସରୁ ସେପ୍ଟେମ୍ବର ମାସ ମଧ୍ୟରେ ଜଗବନ୍ଧୁ ନୟାଗଡ଼ ରାଜା ଓ ଦେବାନ ବରଜୁ ପାଇକରାଙ୍କ ବାହୁଚ୍ଛାୟା ତଳେ ରହି ପୁଣି ଡମ ଶିବ ନାୟକଙ୍କ ସହାୟତାରେ ସଶସ୍ତ୍ର ବିଦ୍ରୋହ ଆରମ୍ଭ କରିଦେଲେ । ସରକାର ମଧ୍ୟ ସୈନ୍ୟ ପଠାଇ ଏହାକୁ ଦମନ କରିବାରେ ଲାଗିପଡ଼ିଲେ । ୧୮୨୦ ବର୍ଷ ସାରା ଜଗବନ୍ଧୁଙ୍କୁ ଧରିବାକୁ ଉଦ୍ୟମ କଲେ । ମାତ୍ର ସବୁ ବିଫଳ ହେଲା । କଟକର କମିସନର ବ୍ଲଣ୍ଟ ଉପରିସ୍ଥ କର୍ମକର୍ତ୍ତାଙ୍କୁ ଜଣାଇଲେ -

''କଟକରୁ ଗଞ୍ଜାମରପାର୍ବତ୍ୟ ଅଞ୍ଚଳ ପର୍ଯ୍ୟନ୍ତ ବହୁ ପ୍ରଭାବଶାଳୀ ଜମିଦାରଙ୍କ ସମର୍ଥକ, ବହୁ ବିଶିଷ୍ଟ ପାର୍ଶ୍ୱଚର ଓ ଖୋରଧା ଜନସାଧାରଣଙ୍କ ସ୍ନେହ ଓ ଶ୍ରଦ୍ଧା ଯୋଗୁଁ ଜଗବନ୍ଧୁଙ୍କ ବିଦ୍ରୋହ ଦମନ କିମ୍ବା ତାଙ୍କୁ ବା ତାଙ୍କ ଅନୁଚରଙ୍କୁ ଧରିବା କଷ୍ଟସାଧ୍ୟ ।''

୧୮୨୧ ଫେବୃଆରୀ ମାସ ୨୧ ତାରିଖରେ ଉଇଲକିନସନ୍ ଆକ୍ଟିଙ୍ଗ୍ କମିସନର ପାକେନହାମ୍‌ଙ୍କୁ ଲେଖି ଜଣାଇଲେ ଯେ ''ସକଳପ୍ରକାର ସତର୍କତାମୂଳକ ପଦକ୍ଷେପ ଓ ସାମରିକ ଅଭିଯାନ ସତ୍ତ୍ୱେ ଘୁମୁସରର ପାଣ ଓ କନ୍ଧମାନେ ବାରମ୍ବାର ବାଣପୁର ଅଞ୍ଚଳରେ ଉପଦ୍ରବ କରୁଛନ୍ତି ଏବଂ ଏହା ନିଶ୍ଚିତଭାବେ ବକ୍‌ସି ଜଗବନ୍ଧୁଙ୍କ ଇଙ୍ଗିତରେ ହେଉଛି ।''

**ଭୂସମ୍ପତ୍ତି ବାଜ୍ୟାପ୍ତ ହେଲା** – ସକଳ ଉଦ୍ୟମ ସତ୍ତ୍ୱେ ବକ୍‌ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ର ଧରା ନ ଦେବାରୁ ୧୮୨୨ ସେପ୍ଟେମ୍ବର ମାସ ୧୨ ତାରିଖରେ ବକ୍‌ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କର ଭୂସମ୍ପତ୍ତିକୁ ସରକାର ବାଜ୍ୟାପ୍ତ ଘୋଷଣା କଲେ । ସେମାନେ କୌଳିକ ପଦବୀ 'ବକ୍‌ସି' ଓ 'ଦେବାନ' ମଧ୍ୟ ବ୍ୟବହାର କରିପାରିବେ ବୋଲି ଘୋଷଣା କରାଗଲା । କିନ୍ତୁ ଏହାର କୌଣସି ସୁଫଳ ନ ମିଳିବାରୁ ସରକାର ଚିନ୍ତିତ ହୋଇପଡ଼ିଲେ ।

ଚତୁର୍ଦ୍ଦଶ ପରିଚ୍ଛେଦ

# ଆପୋସୀ ରାଜିନାମା

ବକ୍‌ସି ଜଗବନ୍ଧୁ ବିପ୍ଳବର କେନ୍ଦ୍ରବିନ୍ଦୁ ଥିଲେ । ତାଙ୍କୁ ଗିରଫ କରି କଠୋର ଦଣ୍ଡ ବିଧାନ କରିବା ସରକାରଙ୍କ ଲକ୍ଷ୍ୟ ଥିଲା । ହୁଏତ ଧରା ପଡ଼ିଥିଲେ ତାଙ୍କୁ ଫାଶୀଦଣ୍ଡ ଦିଆଯାଇଥାନ୍ତା ବା ଦୀର୍ଘ କାରାଦଣ୍ଡ ମିଳିଥାନ୍ତା । ମାତ୍ର ଜଗବନ୍ଧୁଙ୍କୁ ଗିରଫ କରିବା ସମ୍ଭବପର ହୋଇ ନ ଥିଲା । କ୍ରୂର ଦମନମୂଳକ ଆଇନ ପ୍ରୟୋଗ କରି ବା ସୈନ୍ୟ ବାହିନୀଦ୍ୱାରା କାର୍ଯ୍ୟାନୁଷ୍ଠାନ – କୌଣସି ଉପାୟଦ୍ୱାରା ଜଗବନ୍ଧୁ ଧରା ପଡ଼ି ନ ଥିଲେ । ଏଥିରେ ଇଂରେଜ ସରକାରଙ୍କ ମନରେ ଘୋର ନୈରାଶ୍ୟ ସୃଷ୍ଟି ହେଲା ।

୧୮୧୮ ମସିହା ଅକ୍ଟୋବର ମାସ ୨୩ ତାରିଖରେ ଚିଫ୍ ସେକ୍ରେଟେରୀ ଡବ୍ଲିଉ ବେିଲେ କମିସନରଙ୍କୁ ପତ୍ର ଦେଇ ଲେଖିଥିଲେ – ''ବକ୍‌ସି ଜଗବନ୍ଧୁଙ୍କୁ ଯେକୌଣସିମତେ ଜଙ୍ଗଲରେ ଘେରାଉକରି ଧରିବାର ଆଶା କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇ ଆସୁଛି । ତେଣୁ ଜଗବନ୍ଧୁଙ୍କୁ ମାସିକ ଭତ୍ତା ପ୍ରଦାନ ଓ କଲିକତା ପ୍ରେସିଡେନ୍ସି ଭିତରେ କୌଣସିଠାରେ ଥଇଥାନ ସର୍ତ୍ତରେ ସର୍ବକ୍ଷମା ପ୍ରଦାନ ଭଳି ବିକଳ୍ପ ପ୍ରସ୍ତାବ ଉପରେ କମିସନର ନିଜର ମତାମତ ଦିଅନ୍ତୁ । କମିସନର ଏ ପ୍ରସ୍ତାବ ଉପରେ ଜଏଣ୍ଟ ମାଜିଷ୍ଟ୍ରେଟ ଉଇଲିୟମ ଫରେଷ୍ଟର ଓ ବ୍ରିଗେଡିୟର ଥୋମାସଙ୍କ ମତାମତ ଲୋଡ଼ିଲେ ।

ଜଏଣ୍ଟ ମାଜିଷ୍ଟ୍ରେଟ ଫରେଷ୍ଟର ମଧ୍ୟ ସେ ପ୍ରସ୍ତାବରେ ରାଜି ହେଲେ । ଜଗବନ୍ଧୁ ମେଦିନୀପୁର ବା ବାଲେଶ୍ୱରରେ ରହିବାପାଇଁ ସେ ପ୍ରସ୍ତାବ ଦେଲେ । କଟକର ନିକଟବର୍ତ୍ତୀ ହୋଇଥିବା ଦୃଷ୍ଟିରୁ ଏହା ଜଗବନ୍ଧୁଙ୍କ ଗ୍ରହଣଯୋଗ୍ୟ ହେବ ବୋଲି ସେ ଭାବିଥିଲେ । ସେ ମଧ୍ୟ ଜଗବନ୍ଧୁଙ୍କ ଭରଣପୋଷଣପାଇଁ ମାସିକ ଟ ୩୦୦ ଭତ୍ତା ଦେବାକୁ ପ୍ରସ୍ତାବ ଦେଲେ । କିନ୍ତୁ ଏହି ପରିମାଣ ବେଶି ହୋଇଯାଉଛି ବୋଲି ଦର୍ଶାଇ ତାହାକୁ ଟ ୨୦୦ କରିବାପାଇଁ କମିସନର କେର୍ ମତ ଦେଲେ । କିନ୍ତୁ ଜଗବନ୍ଧୁଙ୍କଠାରୁ କୌଣସି ଉତ୍ତର ମିଳି ନ ଥିଲା । କମିସନର ମଧ୍ୟ ଜଗବନ୍ଧୁଙ୍କ ମନୋନୀତ କୌଣସି ବ୍ୟକ୍ତିଙ୍କ ସହିତ ଆଲୋଚନା କରିବାକୁ ଇଚ୍ଛୁକ ବୋଲି

ଜଣାଇଲେ । ବକ୍‌ସି ତା'ର ମଧ୍ୟ କୌଣସି ଜବାବ ଦେଲେ ନାହିଁ । କିନ୍ତୁ ଜଗବନ୍ଧୁଙ୍କ ପୋଷ୍ୟପୁତ୍ର ଶ୍ୟାମସୁନ୍ଦରଙ୍କଠାରୁ ଗୋଟିଏ ଚିଟାଉ ତାଙ୍କୁ ପରେ ମିଳିଥିଲା । ସେଥିରେ ସେ ଖୋରଧା ରାଜାଙ୍କୁ ସିଂହାସନରେ ପୁନଃ ବସାଇବା ଦାବିକୁ ଦୋହରାଇଥିଲେ । ଏହା ସରକାରଙ୍କ ଗ୍ରହଣଯୋଗ୍ୟ ନ ହେବା ସ୍ୱାଭାବିକ । ଇଂରେଜ ସରକାରଙ୍କ ବହୁବିଧ କୂଟକୌଶଳ, ସାମରିକ ଅଭିଯାନ ଓ ପ୍ରଶାସନିକ କ୍ଷମତା ପ୍ରୟୋଗ ସତ୍ତ୍ୱେ ୧୮୧୮, ୧୮୧୯ ଏହି ଦୁଇଟି ବର୍ଷ ବ୍ୟର୍ଥତାରେ କଟିଲା । ଜଗବନ୍ଧୁଙ୍କୁ ଧରି ଶାସ୍ତି ଦେବାର ଉଦ୍ୟମ ଫଳପ୍ରଦ ହେଲା ନାହିଁ ।

୧୮୨୦ ବର୍ଷ ସାରା ମଧ୍ୟ ବ୍ୟାପକ ଉଦ୍ୟମ ଓ ଅଭିଯାନସତ୍ତ୍ୱେ ଇଂରେଜ ସରକାର ବକ୍‌ସିଙ୍କୁ ଧରିବାକୁ ଅସମର୍ଥ ହେଲେ । ୧୮୨୧ ମସିହା ଯାକ ମଧ୍ୟ ପାଣ ଓ କନ୍ଧମାନଙ୍କର ଉପଦ୍ରବ ଲାଗିରହିଲା ।

୧୮୨୨ ମସିହାରେ ବକ୍‌ସି ଜଗବନ୍ଧୁଙ୍କୁ ଧରିବାର ଆଶା ବା ସମ୍ଭାବନା କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇଆସିଲା । ବକ୍‌ସି ଜଗବନ୍ଧୁଙ୍କ ସହଯୋଗୀମାନଙ୍କର ସଂଖ୍ୟା ଦିନକୁ ଦିନ କମୁଥିଲେ ମଧ୍ୟ ସମୟ ଓ ସୁବିଧା ଦେଖି ସେ ବ୍ରିଟିଶ ଶାସିତ କୌଣସି ନା କୌଣସି ଅଞ୍ଚଳରେ ଉପଦ୍ରବ ଆରମ୍ଭ କରିଦେଉଥିଲେ । ଏହା ଜଣେ ବ୍ରିଟିଶ ଅଫିସର ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ ।

''ଜଗବନ୍ଧୁ ତଥାପି ଖୋରଧାବାସୀଙ୍କ ଉପରେ ପ୍ରଭୂତ ପ୍ରଭାବ ଜାରି ରଖିଛନ୍ତି ଏବଂ ଚାଲିଥିବା ବିଶୃଙ୍ଖଳା ତାଙ୍କର ଚକ୍ରାନ୍ତ ବା ପ୍ରୋତ୍ସାହନ ପ୍ରଣୋଦିତ ।''

ଜଗବନ୍ଧୁଙ୍କୁ ଗିରଫ କରିବାରେ ବିଫଳତା ସରକାରଙ୍କର ବହୁବିଧ ସମସ୍ୟା ସୃଷ୍ଟି କଲା । ଏକେ ତ ଜଗବନ୍ଧୁ ପଦାରେ ରହିଲେ । ଦ୍ୱିତୀୟରେ ତାଙ୍କୁ ଧରିବାପାଇଁ ବିଭିନ୍ନ ସ୍ଥାନରେ ସୈନ୍ୟ ମୁତୟନ କରିବାକୁ ପଡ଼ିଲା । ସେମାନଙ୍କୁ ମଧ୍ୟ ସବୁ ସମୟରେ, ସବୁ ଅବସ୍ଥାରେ ଜାଗତିଆର କରି ରଖିବା ଆବଶ୍ୟକ ହେଲା । ପ୍ରଶାସନିକ ବ୍ୟବସ୍ଥାକୁ ଅଧିକ ସଜାଗ କରିବାରେ ଅଧିକ ଖର୍ଚ୍ଚ କରିବାକୁ ପଡ଼ିଲା । ବିଶୃଙ୍ଖଳା ସଦାସର୍ବଦା ଲାଗି ରହିବାରୁ ଖଜଣା ଆଦାୟ ମଧ୍ୟ ଠିକ୍ ଭାବେ ହୋଇପାରୁ ନ ଥିଲା । ସୁତରାଂ ଜଗବନ୍ଧୁ ବାହାରେ ରହିବା ପର୍ଯ୍ୟନ୍ତ ଅଧିକ ସୈନ୍ୟ ମୁତୟନ, ଅଧିକ କର୍ମଚାରୀ ନିଯୁକ୍ତି ଓ ଖଜଣା ଆଦାୟର ଅନିଶ୍ଚିତତା ଲାଗି ରହିବ ବୋଲି କର୍ତ୍ତୃପକ୍ଷ ବୁଝି ପାରିଲେ । ତେଣୁ ବକ୍‌ସିଙ୍କୁ ବିନା ସର୍ତ୍ତରେ କ୍ଷମା ଦେଇ ଓ ମାସିକ ଭତ୍ତା ପ୍ରଦାନ କରି ଆତ୍ମସମର୍ପଣ କରାଇବା ଶ୍ରେୟସ୍କର ବୋଲି ସରକାର ମନେ କଲେ ।

ବ୍ରିଟିଶ ସରକାର ଏଥିମଧ୍ୟରେ ମଧ୍ୟ ଅନ୍ୟ ବିଦ୍ରୋହୀମାନଙ୍କ ପ୍ରତି ଉଦାର ନୀତି ଗ୍ରହଣ କରିସାରିଥିଲେ । ରାଜକ୍ଷମା ଦେବାପୂର୍ବକ ଗୃହ ପ୍ରତ୍ୟାବର୍ତ୍ତନପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରାଯାଇଥିଲା । ବାଜ୍ୟାପ୍ତ କରାଯାଇଥିବା ସେମାନଙ୍କ ପୈତୃକ ସମ୍ପତ୍ତି ଫେରାଇ ଦେବାକୁ ପ୍ରତିଶ୍ରୁତି ଦିଆଯାଇଥିଲା । ଫଳରେ ବହୁ ସହଯୋଗୀ ଜଗବନ୍ଧୁଙ୍କଠାରୁ ଦୂରେଇ ଯାଇଥିଲେ ।

୧୮୨୨ ବର୍ଷ ସାରା କୌଣସିଠାରେ କିଛି ଗଣ୍ଡଗୋଳ ହୋଇ ନ ଥିଲା । କଟକ କମିସନର ବ୍ଲଣ୍ଟ ବିଦ୍ରୋହୀ ନେତା ଜଗବନ୍ଧୁ ଓ ତାଙ୍କ ଦେବାନ ଭ୍ରମରବର ରାୟଙ୍କୁ ମାସିକ ଭତ୍ତା ପ୍ରଦାନପୂର୍ବକ କ୍ଷମା ଦେବାପାଇଁ ବଡ଼ଲାଟଙ୍କୁ ଜଣାଇଲେ । ଭାରତର ବଡ଼ଲାଟ ତିନୋଟି ସର୍ତ୍ତରେ କ୍ଷମା ଦେବାକୁ ରାଜି ହେଲେ ।

୧. ବିଦ୍ରୋହର ମୁଖ୍ୟ ନେତା ୧୮୨୨ ମସିହା ଡିସେମ୍ବର ମାସ ୧ ତାରିଖରୁ ଦୁଇ ବର୍ଷ ମଧ୍ୟରେ ଆତ୍ମସମର୍ପଣ କରିବେ ।
୨. ତାଙ୍କୁ ମାସିକ ଏକଶତ ଟଙ୍କା ଭତ୍ତା ମିଳିବ ।
୩. ସେ କଟକରେ ଅବସ୍ଥାନ କରିବେ । ଜିଲ୍ଲା ମାଜିଷ୍ଟ୍ରେଟଙ୍କ ବିନାନୁମତିରେ କଟକ ବାହାରକୁ ଯାଇପାରିବେ ନାହିଁ ।

ଦେବାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କୁ ମାସିକ ୫୦ଟଙ୍କା ଭତ୍ତା ସହ ଖୋରଧା ନିକଟରେ ରହିବା ସର୍ତ୍ତରେ କ୍ଷମାପ୍ରଦାନ ପ୍ରସ୍ତାବରେ ଗଭର୍ଣ୍ଣର ଜେନେରାଲ ମଧ୍ୟ ରାଜି ହେଲେ ।

୧୮୨୩ ଜାନୁଆରୀ ମାସରେ ଖୋରଧା ମାଜିଷ୍ଟ୍ରେଟ ଏହି ଆଦେଶନାମା ଜଗବନ୍ଧୁଙ୍କୁ ତାଙ୍କ ପୋଷ୍ୟପୁତ୍ର ମାଧ୍ୟମରେ ପଠାଇଲେ । କିନ୍ତୁ ଜଗବନ୍ଧୁ ନିରବ ରହିଲେ । ସମ୍ଭବତଃ ସେ ତାହାକୁ ବିଚାର କରୁଥିଲେ ।

୧୮୨୩ ମସିହା ଶେଷ ଆଡ଼କୁ ଖୋରଧା ମାଜିଷ୍ଟ୍ରେଟ ଉଇଲକିନସନ କୌଣସି ସୂତ୍ରରୁ ଖବର ପାଇଲେ ଯେ ବକ୍ସି ନୟାଗଡ଼ ରାଜ୍ୟରେ ଆତ୍ମଗୋପନ କରି ରହିଛନ୍ତି । ସଙ୍ଗେ ସଙ୍ଗେ ମାଜିଷ୍ଟ୍ରେଟ କମିସନରଙ୍କୁ ପ୍ରସ୍ତାବ ଦେଲେ ଯେ ନୟାଗଡ଼ ରାଜା ଜଗବନ୍ଧୁଙ୍କୁ ଆଶ୍ରୟ ଦେଇଥିବାରୁ ରାଜାଙ୍କୁ ବ୍ୟକ୍ତିଗତଭାବେ ଡକାଇ ପଚରାଯାଉ ଓ ବକ୍ସି ଜଗବନ୍ଧୁଙ୍କୁ ଧରିବାପାଇଁ ସଶସ୍ତ୍ର ସେନାବାହିନୀ ନୟାଗଡ଼ ରାଜ୍ୟକୁ ପଠାଯାଉ । କମିସନର ସେ ପ୍ରସ୍ତାବକୁ ଚିଫ୍ ସେକ୍ରେଟେରୀଙ୍କୁ ଜଣାଇଦେଲେ । ଚିଫ୍ ସେକ୍ରେଟେରୀ କିନ୍ତୁ ଉଉଲକିନସନ୍ଙ୍କ ପ୍ରସ୍ତାବରେ ରାଜି ହେଲେ ନାହିଁ । ୧୮୨୩ ମସିହା ଡିସେମ୍ବର ମାସରେ ଚିଫ୍ ସେକ୍ରେଟେରୀ ନୟାଗଡ଼ର ରାଜା ପ୍ରକୃତରେ ବକ୍ସିଙ୍କ ଆତ୍ମଗୋପନ ଘଟଣା ସହିତ ସମ୍ପୃକ୍ତ ଅଛନ୍ତି କି ନାହିଁ, ତାହା ଠିକ୍ ଭାବେ ଅନୁସନ୍ଧାନ କରିବାକୁ ପରାମର୍ଶ ଦେଲେ ।

ଉଇଲକିନ୍‌ସନ ବକ୍ସି ଜଗବନ୍ଧୁ ନୟାଗଡ଼ରେ ଥିବା ବିଷୟରେ ଅନୁସନ୍ଧାନ ଚଳାଇଲେ । ଏହା କରିବାକୁ ତାଙ୍କୁ ପୂରା ଏକ ବର୍ଷ ଲାଗିଗଲା । ଜଗବନ୍ଧୁ ନୟାଗଡ଼ ରାଜାଙ୍କ ବାହୁଛାୟା ତଳେ ଅଛନ୍ତି ଓ ପୁନର୍ବାର ନୟାଗଡ଼ ସୀମାରେ ଉପଦ୍ରବ କରିବାକୁ ଦଳବଳ ସାଜିଛନ୍ତି ବୋଲି ଚିଫ୍ ସେକ୍ରେଟେରୀଙ୍କୁ ଆକ୍ଟିଙ୍ଗ କମିସନର ପ୍ୟାକେନହାମ୍ ଜଣାଇଲେ । ଏ ଫଳରେ ସଶସ୍ତ୍ର ସୈନ୍ୟ ମୁତୟନ କରାଗଲା ଓ ମାଜିଷ୍ଟ୍ରେଟ ଉଇଲକିନସନଙ୍କୁ ସୈନ୍ୟଚାଳନା କରିବାପାଇଁ କ୍ଷମତା ପ୍ରଦାନ କରାଗଲା ।

ଉଇଲକିନସନ ସଶସ୍ତ୍ର ସେନାବାହିନୀ ନେଇ ନୟାଗଡ଼ ଗଲେ । ସେ ନୟାଗଡ଼ ରାଜବାଟୀରେ ରାଜାଙ୍କୁ ଭେଟିଲେ ଓ ଜଗବନ୍ଧୁଙ୍କୁ ଆତ୍ମସମର୍ପଣ କରିବାପାଇଁ ପ୍ରବର୍ତ୍ତାଇବାଲାଗି ରାଜାଙ୍କୁ ପରାମର୍ଶ ଦେଲେ । ଜଗବନ୍ଧୁଙ୍କୁ ଧରାଇ ନ ଦେଲେ ପରିଣାମ ଭୟାନକ ହେବ ବୋଲି ମଧ୍ୟ ସତର୍କ କରାଇଦେଲେ ।

ରାଜାଙ୍କ ବେବର୍ତ୍ତା ବରଜୁ ପାଇକରା ବକ୍ସି ଜଗବନ୍ଧୁଙ୍କୁ ନୟାଗଡ଼ର ଜଙ୍ଗଲରେ ଭେଟିଲେ । ଜଗବନ୍ଧୁ ମଧ୍ୟ ବ୍ରିଟିଶ ସରକାରଙ୍କ ସଙ୍ଗେ ସଂଘର୍ଷରେ ଲିପ୍ତ ରହି କ୍ଲାନ୍ତ ହୋଇପଡ଼ିଥିଲେ । ତାଙ୍କର ସହଯୋଗୀମାନେ ଗୋଟିକ ପରେ ଗୋଟିଏ ଆତ୍ମସମର୍ପଣ ଅଥବା ଧରା ପଡ଼ିଥିଲେ । ମୁଖ୍ୟ ସହଯୋଗୀ କୃଷ୍ଣଚନ୍ଦ୍ର ଭ୍ରମରବର ମଧ୍ୟ ତାଙ୍କଠାରୁ ଦୂରେଇ ଯାଇଥିଲେ । ଜଗବନ୍ଧୁଙ୍କର ମୁଖ୍ୟ ସମର୍ଥକ ନୟାଗଡ଼ ରାଜା ୧୮୨୩ ମସିହା ଅଗଷ୍ଟରେ ମୃତ୍ୟୁବରଣ କରିଥିଲେ । ତାଙ୍କର ଉତ୍ତରାଧିକାରୀ ବ୍ରଜବନ୍ଧୁ ସିଂହ ମାନ୍ଧାତା ବ୍ରିଟିଶ ସରକାରଙ୍କ ସମର୍ଥକ ଥିଲେ । ସେ ଜଗବନ୍ଧୁଙ୍କୁ ଆଉ ସାହାଯ୍ୟ ଦେବାକୁ ଇଚ୍ଛୁକ ନ ଥିଲେ । ତାଙ୍କ ସମ୍ମାନରେ ମଧ୍ୟ କୌଣସି ପ୍ରକାର ଆଞ୍ଚ ନ ଆସେ, ସେ ପ୍ରତିଶ୍ରୁତି ମାଜିଷ୍ଟ୍ରେଟ ଉଇଲକିନ୍‌ସନ ଦେଇଥିଲେ । ଆଲୋଚକ ଫକୀର ହରିଚନ୍ଦନ ଏ ସଂକ୍ରାନ୍ତରେ ଯାହା ଲେଖିଛନ୍ତି -ନୟାଗଡ଼ ରାଜା ବ୍ରଜବଲ୍ଲଭ ସିଂହ ଖୋରଧା ମାଜିଷ୍ଟ୍ରେଟ ଉଇଲକିନସନ୍‌ଙ୍କୁ କହିଥିଲେ ଯେ ଜଗବନ୍ଧୁ କେବଳ ଖୋର୍ଦ୍ଧା ନୁହେଁ, ଗଞ୍ଜାମରୁ ଘୁମୁସର, ବୌଦ, ରଣପୁର, ନୟାଗଡ଼, ଦଶପଲ୍ଲା ଧରି କଟକ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶାର ହୃଦୟକୁ ଅଧିକାର କରି ବସିଛନ୍ତି । ତେଣୁ ତାଙ୍କ ସମ୍ମାନ ପ୍ରତି ସାମାନ୍ୟ ଆଘାତ କରିବା ଲକ୍ଷ ଲକ୍ଷ ଲୋକଙ୍କ ହୃଦୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିବ । ଉଇଲକିନସନ୍ ଏହାର ଉତ୍ତରରେ କହିଲେ ଯେ ବ୍ରିଟିଶ ସରକାର ବକ୍ସି ଜଗବନ୍ଧୁଙ୍କ ଉଚ୍ଚ ସମ୍ମାନ ପ୍ରତି ବହୁ ଆଗରୁ ସଚେତନ ଅଛନ୍ତି । ସେମାନେ ତାଙ୍କ ପ୍ରତି ଅସମ୍ମାନ କଳାଭଳି କୌଣସି କାର୍ଯ୍ୟାନୁଷ୍ଠାନ କରିବେ ନାହିଁ । ଜଗବନ୍ଧୁ ଇଂରେଜମାନଙ୍କ ପ୍ରସ୍ତାବରେ ରାଜି ହେଲେ ।

ସରକାର ଏହି ରାଜିନାମାକୁ କାର୍ଯ୍ୟକାରୀ କରିବାରେ ଲାଗିପଡ଼ିଲେ । ଗଡ଼ଜାତ ମାହାଲର ସିରସ୍ତାଦାର ସେକ୍ ୱାଜ ମହମ୍ମଦଙ୍କୁ ନୟାଗଡ଼ ପଠାଗଲା । ଜଗବନ୍ଧୁଙ୍କୁ ହସ୍ତୀ ପୃଷ୍ଠରେ ସସମ୍ମାନେ କଟକ ଅଣାଗଲା । ସେ କଟକରେ ମେ ମାସ ୨୭ ତାରିଖରେ ପହଞ୍ଚିଲେ । ସରକାର ତାଙ୍କ ପ୍ରତିଶ୍ରୁତି ଅନୁଯାୟୀ ବକ୍ସିଙ୍କ ପ୍ରତି କୌଣସି ଅସମ୍ମାନ ବା ଅସୌଜନ୍ୟମୂଳକ ବ୍ୟବହାର ପ୍ରଦର୍ଶନ ନ କରିବାପାଇଁ ସମସ୍ତ ପୋଲିସ ଅଫିସର ଓ ତଳିଆ କର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ବକ୍ସି ଜଗବନ୍ଧୁ କଟକ ସହରର ମହାନଦୀ କୂଳରେ ଥିବା ଏକ କୋଠା ଘରେ ରହିଲେ । କେବଳ କମିସନରଙ୍କ ଅନୁମତି ବିନା କଟକ ଛାଡ଼ି ପାରିବେ ନାହିଁ ଏକ ମୁଚାଲିକା ତାଙ୍କଠାରୁ ଲେଖାଇ ନିଆଗଲା । କମିସନର ବ୍ଲଣ୍ଟ ଚିଫ୍ ସେକ୍ରେଟେରୀଙ୍କୁ ଲେଖିଥିଲେ – ''କୌଣସି ପ୍ରତିଶୋଧମୂଳକ ସର୍ତ୍ତ ବା କଟକଣା ଆରୋପ କରାଯିବା ଅନାବଶ୍ୟକ ।''

ନିଷ୍ପତ୍ତି ଅନୁଯାୟୀ ତାଙ୍କ ଭରଣପୋଷଣପାଇଁ ମାସିକ ଏକଶତ ଟଙ୍କା ଭତ୍ତା ଦିଆଗଲା । ପରେ ଚଳିବାରେ ଅସୁବିଧା ହେବାରୁ ମାସିକ ଭତ୍ତା ୧୫୦ ଟଙ୍କାକୁ ବୃଦ୍ଧି କରାଗଲା ।

ରାଜିନାମା କରାଇବାରେ ସାହାଯ୍ୟ କରିଥିବାରୁ ନୟାଗଡ଼ ରାଜାଙ୍କର ଏକ ବର୍ଷର ଖଜଣା ଛାଡ଼ କରାଗଲା । ବେବର୍ତ୍ତା ବରଜୁ ପାଇକରାଙ୍କୁ ଟ ୨୦୦୦ ପୁରସ୍କାର ଦିଆଗଲା । ବକ୍ସିଙ୍କୁ ନିରାପଦରେ କଟକ ପହଞ୍ଚାଇଥିବାରୁ ସେକ୍ ୱାଜ ମହମ୍ମଦ ଟ ୧୦୦୦ ପୁରସ୍କାର ପାଇଲେ ।

ବକ୍ସି ଜଗବନ୍ଧୁ ଦୁଇ ପତ୍ନୀ ଓ ଏକମାତ୍ର ନାବାଳକ ନଅ ବର୍ଷୀୟ ପୁତ୍ର ଗୋପୀନାଥ ବିଦ୍ୟାଧରଙ୍କୁ ଛାଡ଼ି ୧୮୨୯ ମସିହା ଜାନୁଆରୀ ମାସ ୨୪ ତାରିଖ ଶନିବାର ଦିନ କଟକଠାରେ ଇହଧାମ ପରିତ୍ୟାଗ କଲେ ।

**କୃଷ୍ଣଚନ୍ଦ୍ର ଭ୍ରମରବରଙ୍କ ଆତ୍ମସମର୍ପଣ** – ଜଗବନ୍ଧୁଙ୍କ କାୟା ସଙ୍ଗେ ଛାୟା ତୁଲ୍ୟ ସହଯୋଗୀ ଦେବାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ସରକାରଙ୍କ କ୍ଷମାପ୍ରଦାନ ସର୍ତ୍ତରେ ରାଜି ହୋଇ ଖୋରଧା ମାଜିଷ୍ଟ୍ରେଟ ଉଇଲକିନସନ୍‌ଙ୍କ ନିକଟରେ ଆତ୍ମସମର୍ପଣ କଲେ । ତାଙ୍କୁ ମାସିକ ଭତ୍ତା ଟ ୫୦ ଦିଆଗଲା । ସେ ଖୋରଧା ନିକଟସ୍ଥ କୁରାଡ଼ମଲରେ ଅବସ୍ଥାନ କଲେ । ୧୮୨୬ ଜାନୁଆରୀ ୧୨ ତାରିଖରେ ତାଙ୍କ ମାସିକ ଭତ୍ତା ଟ ୧୦୦ କୁ ବୃଦ୍ଧି କରାଗଲା ।

କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କୁ ରାଜି କରାଇଥିବା ହେତୁ ପୂର୍ବଘୋଷିତ ଟ ୨୦୦୦ ପୁରସ୍କାରକୁ ନିମ୍ନୋକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ବାଣ୍ଟି ଦିଆଗଲା –

୧. ଶ୍ୟାମସୁନ୍ଦର ଭଞ୍ଜ - ଟ ୫୦୦
୨. ରାଘବ ପଟ୍ଟନାୟକ - ଟ ୫୦୦
୩. ଖୋରଧା ଦାରୋଗା ହେମପ୍ରସାଦ ରାୟ - ଟ ୫୦୦
୪. ଅଫିସ ସିରସ୍ତାଦାର ସେକ୍ ସାଦିକ୍ ଅଲ୍ଲି - ଟ ୫୦୦



ଦେବାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କ କୁରାଢ଼ମଲସ୍ଥିତ ଜୀର୍ଣ୍ଣ ବାସଗୃହ

ଏବେ ମଧ୍ୟ ଛତ୍ରମାଗଡ଼ ପାଚେରିର କିଛି ଅଂଶ ଅତୀତ ଗୌରବର ମୂକସାକ୍ଷୀ ହୋଇ ରହିଅଛି । କୃଷ୍ଣଚନ୍ଦ୍ର ଆତ୍ମସମର୍ପଣ କରିବା ପରେ କୁରାଢ଼ମଲରେ ଅବସ୍ଥାନ କରୁଥିବା ତାଙ୍କର ଜୀର୍ଣ୍ଣ ଗୃହ ମଧ୍ୟ ପରିତ୍ୟକ୍ତ ହୋଇ ରହିଅଛି ।

ପଞ୍ଚଦଶ ପରିଚ୍ଛେଦ

# ୧୮୧୭ ସଂଗ୍ରାମର ସ୍ୱରୂପ

ଓଡ଼ିଶାର ୧୮୧୭ ସଂଗ୍ରାମକୁ ବ୍ରିଟିଶ ଐତିହାସିକମାନେ 'ପାଇକ ବିଦ୍ରୋହ' ବୋଲି ଆଖ୍ୟା ଦେଇଛନ୍ତି – ଠିକ୍ ଯେମିତି ଏହାର ୪୦ ବର୍ଷ ପରେ ୧୮୫୭ ମସିହାରେ ଭାରତରେ ସଂଘଟିତ ହୋଇଥିବା ବିସ୍ଫୋରଣକୁ 'ସିପାହି ବିଦ୍ରୋହ' ବୋଲି ଲେଖିଯାଇଛନ୍ତି ।

କେବଳ ଇଂରେଜ ଐତିହାସିକ ନୁହନ୍ତି, ଓଡ଼ିଶାର ମଧ୍ୟ କେତେକ ଲବ୍ଧପ୍ରତିଷ୍ଠ ଐତିହାସିକ ଓ ଐତିହାସିକ ବୋଲାଉଥିବା ଉଚ୍ଚ ପଦବୀରେ ଅଧିଷ୍ଠିତ କେତେକ ବ୍ୟକ୍ତି ଏହି ସଂଗ୍ରାମର ଗୁରୁତ୍ୱ ହ୍ରାସ କଲାଭଳି ମନ୍ତବ୍ୟମାନ ଦେଇଛନ୍ତି । ଓଡ଼ିଶା ତଥା ଭାରତର ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିବା ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିବା ହରେକୃଷ୍ଣ ମହତାବ ଏହାକୁ ବ୍ରିଟିଶମାନଙ୍କ ବିରୋଧରେ ପାଇକମାନଙ୍କ କ୍ରୋଧର ପ୍ରତିଫଳନ ମାତ୍ର ବୋଲି କହିଛନ୍ତି । ତାଙ୍କ ମତରେ ଏହାକୁ 'ବିଦ୍ରୋହ' କହିବା ମଧ୍ୟ ଠିକ୍ ହେବ ନାହିଁ । ଏହା ଏକ ମେଳି ଥିଲା ଓ ଏହା ପଛରେ କୌଣସି ସଙ୍ଗଠନ ନ ଥିଲା । ଏହା ମଧ୍ୟ ବ୍ରିଟିଶ ସାମରିକ ଶକ୍ତି ଉପରେ (କେବଳ ପୁରୀ ଘଟଣା ବ୍ୟତୀତ) କୌଣସି ପ୍ରଭାବ ପକାଇ ନ ଥିଲା । ଓଡ଼ିଶାର ଜଣେ ପ୍ରଖ୍ୟାତ ଐତିହାସିକ ଡଃ ନବୀନ କୁମାର ସାହୁଙ୍କ ମତରେ ଏହା ବ୍ରିଟିଶ ଶାସନର ଅବସାନ ଘଟାଇବା ନିମନ୍ତେ ସୁଚିନ୍ତିତ ପଦକ୍ଷେପ ନ ଥିଲା । ଏହା ମଧ୍ୟ ସେପରି ଲୋକପ୍ରିୟ ନ ଥିଲା । ୧୮୧୭ ମାର୍ଚ୍ଚ ମାସରେ କନ୍ଧମାନେ କେବଳ ଲୁଣ୍ଠନ ଉଦ୍ଦେଶ୍ୟରେ ବାଣପୁର ଆକ୍ରମଣ କରିଥିଲେ ବୋଲି ଆଉ ଜଣେ ଐତିହାସିକ ପ୍ରଭାତ ମୁଖାର୍ଜୀ କହିଛନ୍ତି ।

ପ୍ରଶ୍ନ ଉଠେ, ଏହା କେତେଦୂର ଠିକ୍ ? ଓଡ଼ିଶାର ଆଉ ଜଣେ ବିଶିଷ୍ଟ ଐତିହାସିକ ପୂର୍ବତନ ମୁଖ୍ୟ ଅଧ୍ୟାପକ ଡଃ ଭବାନୀଚରଣ ରାୟ ଏ ବିଷୟରେ ସ୍ପଷ୍ଟ ରାୟ ଦେଇଛନ୍ତି – ''ବାସ୍ତବିକ ପ୍ରକୃତ ଘଟଣା ବିଶ୍ଳେଷଣ କରିବାକୁ ଗଲେ ୧୮୧୭ ବିଦ୍ରୋହ ପାଇକ ବିଦ୍ରୋହ ନ ଥିଲା, କାରଣ ପାଇକମାନେ ବିଦ୍ରୋହରେ ସାମିଲ ଥିଲେ ମଧ୍ୟ ଦଳାଇ, ଦଳବେହେରା, ଲୁଣ ବ୍ୟବସାୟୀ ଓ ନିଷ୍ପେଷିତ ଜନସାଧାରଣ ଜାତିବର୍ଣ୍ଣଧର୍ମ ନିର୍ବିଶେଷରେ ଓଡ଼ିଶା ବିପ୍ଳବରେ ଯୋଗ ଦେଇଥିଲେ ।''

ପୁଣି ସେ ଲେଖିଛନ୍ତି – ''ଆଦିବାସୀମାନଙ୍କ ସଂଖ୍ୟା ବିଦ୍ରୋହ ଅଭିଯାନରେ କମ୍ ନ ଥିଲା । କୁଜଙ୍ଗ ରାଜାଙ୍କ ବ୍ରିଟିଶ ଶାସନ ବିରୋଧାତ୍ମକ କାର୍ଯ୍ୟ ଓ ପୁରୀ ରାଜାଙ୍କ ପରୋକ୍ଷ ସାହାଯ୍ୟ ବ୍ରିଟିଶ ଶାସନକୁ ଦୂରୀଭୂତ କରିବାକୁ ସାଧାରଣ ଲୋକମାନଙ୍କୁ କେତେକାଳପାଇଁ ବିଶେଷ ଉତ୍ସାହ ପ୍ରଦାନ କରିଥିଲା । ଜଗନ୍ନାଥ ମନ୍ଦିରର ସେବକମାନେ ମଧ୍ୟ ଏ ବିପ୍ଳବରେ ସହଯୋଗ କରିଥିଲେ । ଏ ପରିପ୍ରେକ୍ଷୀରେ ଯେହେତୁ ବିଭିନ୍ନ ଶ୍ରେଣୀର ଲୋକ ବହୁସଂଖ୍ୟାରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ କରିଥିଲେ, ତେଣୁ ବିପ୍ଳବକୁ 'ପାଇକ ବିଦ୍ରୋହ' ବୋଲି ନାମକରଣ କରିବାର କୌଣସି ଯଥାର୍ଥତା ନାହିଁ । ଏହା ଅବାନ୍ତର ଓ ଉଦ୍ଦେଶ୍ୟ ପ୍ରଣୋଦିତ .... ।''

ଇଂରେଜ ସରକାରଙ୍କ ପ୍ରକୃତ ଉଦ୍ଦେଶ୍ୟ ସମ୍ପର୍କରେ ସେ ସୂଚାଇ ଦେବାକୁ ଯାଇ କହିଛନ୍ତି – '' .... ବାସ୍ତବିକ୍ ଘଟଣାକୁ ହେୟ ଓ ସୀମିତ କରି କେବଳ ଗୋଟିଏ ଶ୍ରେଣୀର ଲୋକମାନଙ୍କ କାର୍ଯ୍ୟ ଥିଲା ବୋଲି ଧାରଣା ଦେଇ ଅନ୍ୟ ଶ୍ରେଣୀର ଲୋକମାନଙ୍କୁ ସେଥିରୁ ଦୂରେଇ ରଖିବାକୁ ଏପରି ଲେଖିଯାଇଛନ୍ତି । ସେମାନେ ସୂଚାଇ ଦେଇଛନ୍ତି ଯେ କେତେକ ମୁଷ୍ଟିମେୟ ପାଇକ ସେମାନଙ୍କ ସ୍ୱାର୍ଥସିଦ୍ଧି ଆଶାରେ ବ୍ରିଟିଶମାନଙ୍କ ବିରୋଧରେ ବିଦ୍ରୋହ ଆରମ୍ଭ କରିଦେଇଥିଲେ । ସେମାନଙ୍କ ପଛରେ ଜନସାଧାରଣ ନ ଥିଲେ... ।''

ଡଃ ରାୟ ତାଙ୍କର ସୁଚିନ୍ତିତ ମତ ଦେଇଛନ୍ତି – ''ଏହା ଐତିହାସିକ ଦୃଷ୍ଟିକୋଣରୁ ଅସତ୍ୟ ।''

୧୮୧୭ ସଂଗ୍ରାମର ସର୍ବମୟ କର୍ତ୍ତା ଅବଶ୍ୟ ଜଗବନ୍ଧୁ ଥିଲେ । କିନ୍ତୁ ଖୋରଧା ସମେତ ସମଗ୍ର ଓଡ଼ିଶା ପ୍ରଦେଶର ଲୋକେ ଯେ ତାଙ୍କ ସଂଗ୍ରାମରେ ସାମିଲ ଥିଲେ ତାହା କଟକର ସେତେବେଳକାର କଲେକ୍ଟର ଟାଓ୍ୱାରଙ୍କ ରିପୋର୍ଟରୁ ଜଣାଯାଏ – ''ଜଗବନ୍ଧୁଙ୍କର ପଦପଦବୀ ହେତୁ ଖୋରଧା ଅଧିବାସୀଙ୍କ ଉପରେ ଅପ୍ରତିହତ ପ୍ରଭାବ ଯେ ଥିଲା, ଏହା ସ୍ପଷ୍ଟ । ଖୋରଧା ରାଜା ମଧ୍ୟ ଜଗବନ୍ଧୁଙ୍କୁ ସମର୍ଥନ କରୁଥିଲେ । ଏହା ସ୍ୱୀକାର କରାଗଲେ ମଧ୍ୟ ଖୋରଧା ଅଧିବାସୀ ନିଜ ଜୀବନ, ଧନସମ୍ପତ୍ତି ଓ ପରିବାର ପ୍ରଭୃତିଙ୍କୁ ତୁଚ୍ଛ କରି ଏହି ସଂଗ୍ରାମରେ ଯୋଗ ଦେଇ ନ ଥାନ୍ତେ, ଯଦି ସେପରି ଇଂରେଜ ଶାସନର ଅତ୍ୟାଚାର ଓ ଶୋଷଣର ଶିକାର ହୋଇ ନ ଥାନ୍ତେ...''

୧୮୧୭ ସଂଗ୍ରାମର ପରିସର ମଧ୍ୟ ବ୍ୟାପକ ଥିଲା । ତାହା କଲେକ୍ଟର ଟାଓ୍ୱାରଙ୍କର ବୋର୍ଡ ଅଫ୍ ରେଭିନ୍ୟୁଙ୍କୁ ଦେଇଥିବା ପତ୍ରରୁ ଜଣାଯାଏ – ''ମୁଁ ଜାଣିବାକୁ ପାଇଛି – ଯଦିଓ ତାହା କେତେଦୂର ସତ୍ୟ ତାହା ମୁଁ ଜାଣେନା– ଯେ ମୟୂରଭଞ୍ଜରୁ ଆରମ୍ଭକରି ଘୁମୁସର ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳର ରାଜାମାନେ ଖୋରଧା ରାଜାଙ୍କ ସହ

ହାତ ମିଳାଇଛନ୍ତି । ପୁରୀ ସହର ଆଉ କେତୁଟା ଦିନ ବିଦ୍ରୋହୀଙ୍କ ହାତରେ ଯଦି ରହିଥାନ୍ତା, ସମଗ୍ର ଓଡ଼ିଶାରେ ଯେ ଏହି ବିଦ୍ରୋହ ବ୍ୟାପିଯାଇଥାଆନ୍ତା – ଏଥିରେ ସନ୍ଦେହ ନାହିଁ ।''

୧୮୧୭ ମୁକ୍ତି ସଂଗ୍ରାମର ପରିଣାମ ମଧ୍ୟ କମ୍ ଭୟାବହ ନ ଥିଲା । ପୂର୍ବରୁ ୧୮୦୫ ମସିହାରେ ଇଂରେଜମାନେ ଜୟୀ ରାଜଗୁରୁଙ୍କୁ ଅତି ନୃଶଂସଭାବେ ହତ୍ୟା କରିଥିଲେ । ୧୮୧୭ ମସିହା ପ୍ରଥମ ଭାଗରେ ଯେଉଁ ସଂଗ୍ରାମ ଆରମ୍ଭ ହେଲା, ସେଥିରେ ରାଜା, ତାଙ୍କ ପୁତ୍ର ଓ ପରିବାରବର୍ଗଙ୍କୁ ବନ୍ଦୀ କରାଯାଇ କଟକ ବାରବାଟୀ ଦୁର୍ଗରେ ରଖାଗଲା । ବନ୍ଦୀ ଅବସ୍ଥାରେ ରାଜା ମୃତ୍ୟୁବରଣ କଲେ । ଏତେ ଅଳ୍ପ ବୟସରେ ତାଙ୍କ ମୃତ୍ୟୁ ଅସ୍ୱାଭାବିକ ବୋଲି ମନେହୁଏ । ସମ୍ଭବତଃ, ତାଙ୍କୁ ଲୋକଲୋଚନର ଅନ୍ତରାଳରେ ଯେ କୌଣସି ଉପାୟରେ ହତ୍ୟା କରାଯାଇଥିଲା । ଯେଉଁମାନେ ଫାଶୀ ପାଇଲେ, ସେମାନେ ହେଲେ ଗୋପାଳ ଛୋଟରାୟ, ସଚ୍ଚିଦାନନ୍ଦ ପଟ୍ଟନାୟକ, ପରଶୁରାମ ରାଉତରାୟ, ରାମ ସିଂହ, ନାଥ ପ୍ରଧାନ ଓ ନରସିଂହ । ବୋଲଗଡ଼ର କାଳିଆଙ୍କୁ ଜୟୀ ରାଜଗୁରୁଙ୍କ ଭଳି ଗଛ-ଡାଳରେ ଝୁଲାଇ ଫାଶୀ ଦିଆଯାଇଥିଲା । ଦ୍ୱୀପାନ୍ତର ଦଣ୍ଡ ୧୦୨ ଜଣଙ୍କୁ ଦିଆଯାଇଥିଲା । ସେମାନଙ୍କୁ ଆଲିପୁର ଜେଲରେ ରଖା ଯାଇଥିଲା । ପ୍ରଦେଶରୁ ଅସ୍ଥାୟୀ ଭାବେ ୨୫ ଜଣ ବହିଷ୍କୃତ ହୋଇଥିଲେ । ସେମାନଙ୍କୁ ମେଦିନୀପୁର ଜେଲରେ ରଖାଯାଇଥିଲା । ୪ ଜଣଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଦିଆଯାଇଥିଲା । ଆଉ ମଧ୍ୟ ୨୬ ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଯାଇଥିଲା । ପାଇକ ସରଦାର ପିଣ୍ଡିକି ହରିଚନ୍ଦନଙ୍କୁ ପଛରୁ ଗୋଡ଼ାଇ ଗୋଡ଼ାଇ ଗୁଳି କରି ହତ୍ୟା କରାଯାଇଥିଲା । ବିଭିନ୍ନ ସ୍ଥାନରେ ଗୁଳି ମାଡ଼ରେ ଯେଉଁମାନେ ମଲେ ବା ଖଣ୍ଡିଆଖାବରା ହେଲେ ସେମାନଙ୍କ ସଂଖ୍ୟା ନିରୂପଣ କରିବା ସହଜସାଧ୍ୟ ନୁହେଁ ।

୧୮୫୭ ମସିହା ସଂଗ୍ରାମ ଖୋରଧା ମୁକ୍ତି ସଂଗ୍ରାମର ଠିକ୍ ୪୦ ବର୍ଷ ପରେ ହୋଇଥିଲା । ଏହା କିନ୍ତୁ ଆହତ ଆଧ୍ୟାତ୍ମିକ ଭାବନାରୁ ହୋଇଥିଲା । ଏଥିରେ ମୁଖ୍ୟ ଅଂଶଗ୍ରହଣ କରିଥିଲେ ଅସନ୍ତୁଷ୍ଟ ସିପାହିମାନେ । ଏହା ମଧ୍ୟ ମାତ୍ର ଦୁଇଟା ବର୍ଷ ମଧ୍ୟରେ ନିର୍ବାପିତ ହୋଇଯାଇଥିଲା । ମାତ୍ର ଖୋରଧା ସଂଗ୍ରାମର ପୃଷ୍ଠଭୂମି ଥିଲା ରାଜନୀତିକ ତଥା ଆର୍ଥନୀତିକ । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଭାରତର ଅନ୍ୟକୌଣସି ଅଞ୍ଚଳରେ ଏପରି ଯୋଜନାବଦ୍ଧଭାବେ ଏବଂ ସ୍ୱତଃସ୍ଫୂର୍ତ୍ତଭାବେ ଓ ଏତେ ଦୀର୍ଘକାଳବ୍ୟାପୀ ସଂଗ୍ରାମ ଦେଖାଦେଇ ନ ଥିବା ଦୃଷ୍ଟିରୁ ୧୮୧୭ ମସିହାର ଖୋରଧା ମୁକ୍ତି ସଂଗ୍ରାମକୁ 'ଭାରତର ପ୍ରଥମ ମୁକ୍ତି ସଂଗ୍ରାମ' କହିବା ଯଥାର୍ଥ ।

## ଷୋଡ଼ଶ ପରିଚ୍ଛେଦ

# ମୂଲ୍ୟାୟନ

ଇତିହାସ ଆଲୋଚନା କଲେ ଜଣାଯାଏ ଯେ ବେଳେ ବେଳେ ପୃଥିବୀରେ ଏପରି ମନୀଷୀମାନଙ୍କ ଆବିର୍ଭାବ ଘଟେ ଯେ ସେମାନେ ନିଜର ଶକ୍ତି, ସାମର୍ଥ୍ୟ ବା ପରାକ୍ରମ ବଳରେ ପାରିପାର୍ଶ୍ୱିକ ଘଟଣାକୁ ନିୟନ୍ତ୍ରିତ ବା ପରିଚାଳିତ କରନ୍ତି । ସେମାନେ ବସ୍ତୁତଃ ନୂତନ ଇତିହାସ ସୃଷ୍ଟି କରିଥାନ୍ତି । ବକ୍‌ସି ଜଗବନ୍ଧୁ ଥିଲେ ସେହିଭଳି ଏକ ମହାନ୍ ବ୍ୟକ୍ତି ଯେ କି ଖୋରଧା ବା ଓଡ଼ିଶା ଇତିହାସର ଏକ ରକ୍ତରଞ୍ଜିତ ଅଧ୍ୟାୟ ସୃଷ୍ଟି କରିଯାଇଛନ୍ତି ।

ଜଗବନ୍ଧୁ ଉଚ୍ଚବଂଶଜ ଥିଲେ । ଗବେଷକ ସୁଧାକର ପଟ୍ଟନାୟକଙ୍କ ଆବିଷ୍କୃତ ଗ୍ରନ୍ଥରୁ ସୂଚନା ମିଳେ ଯେ ଜଗବନ୍ଧୁ ଭୋଇ ବଂଶର ପ୍ରଥମ ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ବଂଶଧର ଥିଲେ । ତାଙ୍କର ମଧ୍ୟ ଶେରଗଡ଼ ଓ ବଡ଼ାମ୍ବା ରାଜାଙ୍କ ସହିତ ବୈବାହିକ ସମ୍ପର୍କ ଥିଲା । କିନ୍ତୁ ରାଜପୁତ୍ରର ସମସ୍ତ ସୁଖ-ସମ୍ଭୋଗ ପରିହାର କରି ସେ ଯେପରି କଣ୍ଟକିତ ଜୀବନ ଆଦରି ନେଲେ, ଓଡ଼ିଶା ଇତିହାସରେ ତା'ର ପଟାନ୍ତର ନାହିଁ ।

ବକ୍‌ସିଙ୍କ ଶାରୀରିକ ଗଠନ-ସୌଷ୍ଠବ ଅତି ସୁନ୍ଦର ଥିଲା । ସେ ମଧ୍ୟ ବଳିଷ୍ଠ ଥିଲେ । ଦୈନିକ ସେ କୁସ୍ତି କସରତ କରୁଥିଲେ । ବ୍ରିଟିଶ ଐତିହାସିକ ଟଏନ୍‌ବୀ ତାଙ୍କର ପରାକ୍ରମ ବିଷୟରେ ସୂଚନା ଦେଇଛନ୍ତି । ବକ୍‌ସି ଖୋରଧାର ଏକ ମନ୍ଦିରରେ ପଡ଼ି ରହିଥିବା ବିଶାଳ ପଥର ଖଣ୍ଡିକ (୧୦'×୫'×୨୧ ୧/୨) କୁ ଟେକି ଉଠାଇ ପାରୁଥିଲେ । ଆଉ ଏକ କିମ୍ବଦନ୍ତୀ ଅନୁଯାୟୀ ତାଙ୍କ ଦାଣ୍ଡ ଦୁଆରେ ଦୁଇ ମହଣକିଆ ଦୁଇଟି ବର୍ତ୍ତୁଳାକାର ପଥର ପଡ଼ିଥିଲା । ବକ୍‌ସି ସେ ଦୁଇଟିକୁ ଗୋଡ଼ରେ ଗଡ଼େଇ ଗଡ଼େଇ ଗାଧୁଆ ତୁଠ ପର୍ଯ୍ୟନ୍ତ ନେଉଥିଲେ ଓ ଗାଧୋଇ ସାରି ଫେରିଲାବେଳକୁ ସେହି ଦୁଇ ପଥରକୁ ଗଡ଼େଇ ଗଡ଼େଇ ଘର ପର୍ଯ୍ୟନ୍ତ ଆଣୁଥିଲେ ।

ବକ୍‌ସି ମହାନ୍ ବୀର ଥିଲେ । ତାଙ୍କର ଏକ ବଡ଼ ଘୋଡ଼ା ଥିଲା । ସେହି ଘୋଡ଼ାରେ ବସି ଅନାୟାସରେ ଦୀର୍ଘ ଜଙ୍ଗଲ ପଥ ଅତିକ୍ରମ କରୁଥିଲେ । ସେ ଖୋରଧା ରାଜାଙ୍କ ବାଙ୍କି ଯୁଦ୍ଧର ସେନାଧ୍ୟକ୍ଷ ଥିଲେ । ରଣପୁର ରାଜାଙ୍କ ସହିତ ଯୁଦ୍ଧରେ ସେ ବିଜୟ ଲାଭ କରିଥିଲେ । ୧୮୦୪ରେ ଜୟୀ ରାଜଗୁରୁଙ୍କ ପରାମର୍ଶକ୍ରମେ

ରାଜା ଦ୍ୱିତୀୟ ମୁକୁନ୍ଦଦେବ ଇଂରେଜମାନଙ୍କ ସହିତ ଯୁଦ୍ଧରେ ଲିପ୍ତ ହେଲେ । ରାଜାଙ୍କ ଅବହେଳା ସତ୍ତ୍ୱେ ବକ୍‌ସି ଜଗବନ୍ଧୁ ନିଜ କର୍ତ୍ତବ୍ୟ ସମ୍ପାଦନରୁ ବିରତ ହୋଇ ନ ଥିଲେ । ୧୮୦୪-୦୫ ଇଂରେଜମାନଙ୍କ ସହିତ ଯୁଦ୍ଧରେ ରାଜାଙ୍କ ପୃଷ୍ଠଦେଶ ରକ୍ଷା ଦାୟିତ୍ୱରେ ରହିଥିଲେ ଓ ଇଂରେଜମାନଙ୍କ ସହ ପ୍ରବଳ ପରାକ୍ରମରେ ଯୁଦ୍ଧ କରିଥିଲେ ।

୧୮୦୪ ଯୁଦ୍ଧ ପରେ ୧୮୧୭ ମସିହାରେ ଇଂରେଜମାନଙ୍କ ସହିତ ପୁଣି ସଂଗ୍ରାମ ହେଲା । ସେ ସଂଗ୍ରାମର ମଧ୍ୟ ଅଧିନାୟକ ହେଲେ ବକ୍‌ସି ଜଗବନ୍ଧୁ ।

ବକ୍‌ସି ଜଗବନ୍ଧୁଙ୍କର ସ୍ଥାନ ରାଜ୍ୟରେ ଉଚ୍ଚ ଥିଲା । ବସ୍ତୁତଃ ତାହା ଥିଲା ଦ୍ୱିତୀୟ । ସେ ବଂଶାନୁକ୍ରମେ ବକ୍‌ସି ପଦବୀ ବ୍ୟବହାର କରିଆସୁଥିଲେ । ତା'ର ପାରିଶ୍ରମିକ ସ୍ୱରୂପ ରାଜା ତାଙ୍କୁ ଏକ ବିଶାଳ ଜମିଖଣ୍ଡ ଜାଗିରି ସୂତ୍ରରେ ଦେଇଥିଲେ । ତାହା ବକ୍‌ସିବାଡ଼ ନାମରେ ଖ୍ୟାତ ଥିଲା । ଏତଦ୍‌ବ୍ୟତୀତ ତାଙ୍କୁ ରୋଡ଼ଙ୍ଗଗଡ଼ର ଜମିଦାରୀ ମଧ୍ୟ ମିଳିଥିଲା । ଏହି ଜମିଦାରୀ ଯୋଗୁଁ ବକ୍‌ସି ଜଗବନ୍ଧୁଙ୍କର ପରିବାର ଧନଶାଳୀ ହୋଇଥିଲେ । ମାତ୍ର ଇଂରେଜମାନେ ଓଡ଼ିଶା ଅଧିକାର କଲା ପରେ ଜଗବନ୍ଧୁଙ୍କ ଜୀବନରେ ଘନଘଟା ମାଡ଼ି ଆସିଲା । ଇଂରେଜ ସରକାର ଅବିବେକୀ ହୋଇ ବକ୍‌ସିଙ୍କ ନିଷ୍କର ଜମି ପ୍ରତ୍ୟାହାର କରିନେଲେ । ପରେ ପରେ ରୋଡ଼ଙ୍ଗ ଜମିଦାରୀରୁ ଉଚ୍ଛେଦ କରିବାପାଇଁ ଷଡ଼୍‌ଯନ୍ତ୍ର ଆରମ୍ଭ ହେଲା । ତା'ର ସୂତ୍ରଧର ଥିଲେ ଜନୈକ ଅଣଓଡ଼ିଆ କର୍ମଚାରୀ – କୃଷ୍ଣଚନ୍ଦ୍ର ସିଂହ । ବକ୍‌ସିଙ୍କୁ ଶେଷରେ ସେ ଜମିଦାରୀରୁ ଉଚ୍ଛେଦ କଲେ । ନିଜର ଅସହାୟତା ପ୍ରକାଶ କରି ଜଗବନ୍ଧୁ ତତ୍କାଳୀନ ବନ୍ଦୋବସ୍ତ କମିସନର ରିଚାର୍ଡସନ୍‌ଙ୍କ ନିକଟରେ ଏହାର ବିଧିବଦ୍ଧ ତଦନ୍ତପାଇଁ ଆବେଦନ କଲେ । ତଦନ୍ତରେ ମଧ୍ୟ ଜଣାପଡ଼ିଲା ଯେ ଚଞ୍ଚକତା ବା ପ୍ରତାରଣା କରି ବକ୍‌ସିଙ୍କୁ ତାଙ୍କ ଜମିଦାରୀରୁ ଉଚ୍ଛେଦ କରାଯାଇଛି । ମାତ୍ର ତା'ର ମଧ୍ୟ କିଛି ଫଳ ହେଲା ନାହିଁ । ଓଲଟି ତାଙ୍କୁ ଆଇନ ଅଦାଲତରେ ଆଶ୍ରୟ ନେବାକୁ କୁହାଗଲା । ମାତ୍ର ସେଥିପାଇଁ ତାଙ୍କର ସମ୍ବଳ ନ ଥିଲା । ନିଃସ୍ୱ ହୋଇ ଜଣେ ବିତ୍ତଶାଳୀ ବଙ୍ଗାଳୀଙ୍କ ବିରୋଧରେ ମକଦ୍ଦମା କରି କୌଣସି ଫଳ ପାଇପାରିବେ ନାହିଁ ବୋଲି ବକ୍‌ସିଙ୍କର ହୃଦ୍‌ବୋଧ ହେଲା । ଫଳରେ ଇଂରେଜ ସରକାରଙ୍କ ପ୍ରତି ତାଙ୍କର ଘୋର ଅସନ୍ତୋଷ ଜନ୍ମିଲା । ତାଙ୍କ ଆହ୍ୱାନକ୍ରମେ ରୟତ, ପାଇକ, ଦଳାଇ ଓ ଦଳବେହେରାମାନେ ସଂଗ୍ରାମ ଚଳାଇବାପାଇଁ ବଦ୍ଧପରିକର ହେଲେ । ତା'ର ସେନାଧ୍ୟକ୍ଷ ହେଲେ ବକ୍‌ସି ଜଗବନ୍ଧୁ ।

୧୮୧୭ ମସିହା ମାର୍ଚ୍ଚ ମାସରେ ଆରମ୍ଭ ହେଲା ସଂଗ୍ରାମ । ବାଣପୁର ଓ ଖୋରଧାରେ ଇଂରେଜମାନେ ପ୍ରାଥମିକ ଅବସ୍ଥାରେ ବିପର୍ଯ୍ୟୟର ସମ୍ମୁଖୀନ ହେଲେ । କ୍ରମେ ସେହି ସଂଗ୍ରାମ ବନାଗ୍ନିସଦୃଶ ବିଭିନ୍ନ ସ୍ଥାନକୁ ବ୍ୟାପିଗଲା । ଇଂରେଜମାନେ ବିହିତ କାର୍ଯ୍ୟାନୁଷ୍ଠାନ କରିବାକୁ ଅସମର୍ଥ ହେଲେ । ଜଗବନ୍ଧୁଙ୍କ ସାଙ୍ଗଠନିକ ଶକ୍ତି,

ନେତୃତ୍ୱ ଓ ନିର୍ଦ୍ଦେଶ ଅନୁସାରେ ପାଇକମାନେ ସଂଗ୍ରାମ ଚଳାଇଲେ । କିଛି କାଳପାଇଁ ବାଣପୁର, ଖୋରଧା, ପିପିଲି, ପୁରୀ, କୁଜଙ୍ଗ, ପଟ୍ଟାମୁଣ୍ଡାଇ ପ୍ରଭୃତି ଅଞ୍ଚଳରୁ ବ୍ରିଟିଶ ଶାସନ ମୂଳପୋଛ ହୋଇଗଲା କହିଲେ ଚଳେ ।

ସଂଗ୍ରାମର ଭୟାବହତା ସମ୍ପର୍କରେ ଇଂରେଜ ଐତିହାସିକ ଟଏନ୍‌ବୀ ତାଙ୍କ ଲିଖିତ 'ଓଡ଼ିଶା ଇତିହାସ'ରେ ଏହା ସ୍ୱୀକାର କରିଛନ୍ତି – ''ଏହି ବିଦ୍ରୋହ ଏପରି ଭୟାବହ ରୂପ ଧାରଣ କଲା ଯେ ସମଗ୍ର ଓଡ଼ିଶାରୁ ନ ହେଲେ ମଧ୍ୟ ଅନନ୍ତଃପକ୍ଷେ ଖୋରଧା ଅଞ୍ଚଳରେ ଆମର ସ୍ଥିତିକୁ ଦୋହଲାଇ ଦେଲା....''

କିନ୍ତୁ ଶୃଙ୍ଖଳିତ ବ୍ରିଟିଶ ସୈନ୍ୟବାହିନୀ ଆଗରେ ଅସଙ୍ଗଠିତ, ଅପ୍ରସ୍ତୁତ ବିଦ୍ରୋହୀ ନେତା କେତେକାଳ ଅବା ମୁକାବିଲା କରିପାରନ୍ତେ ? ବ୍ରିଟିଶ ବାହିନୀ କମାଣ ବାହିନୀ ସାହାଯ୍ୟରେ ବିଦ୍ରୋହୀମାନଙ୍କର କ୍ଷଣୁଆସୀ ଆକ୍ରମଣକୁ ପ୍ରତିହତ କଲେ ।

ଏହାପରେ ଆରମ୍ଭ ହେଲା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ । ସମ୍ମୁଖ ଯୁଦ୍ଧରେ ବ୍ରିଟିଶ ବାହିନୀର ମୁକାବିଲା କରିବା ଅସମ୍ଭବ ମନେ କରି ଜଗବନ୍ଧୁ ଚଳାଇଲେ ଗରିଲା ଯୁଦ୍ଧ । ତାଙ୍କ ନିର୍ଦ୍ଦେଶରେ ବିଦ୍ରୋହୀମାନେ ଜଗବନ୍ଧୁଙ୍କ ସଙ୍ଗେ ଓଡ଼ିଶାର ଘଞ୍ଚ ଅରଣ୍ୟ ମଧ୍ୟକୁ ଯାଇ ସେଠାରେ ଶିବିର ସ୍ଥାପନ କଲେ ଓ ବ୍ରିଟିଶ ଅଧିକୃତ ବା ଶାସିତ ଅଞ୍ଚଳରେ ଅତର୍କିତଭାବେ ଆକ୍ରମଣ କଲେ । କେବଳ ସେତିକି ନୁହେଁ, ବ୍ରିଟିଶ ସରକାରଙ୍କ ସଙ୍ଗେ ସମସ୍ତ ପ୍ରକାର ଅସହଯୋଗ କରିବାକୁ ଆଗେଇ ଆସିଲେ । ସେମାନେ ବଣ ଜଙ୍ଗଲକୁ ପଳାଇଗଲେ ଜମି ସବୁ ପଡ଼ିଆ ପଡ଼ିବ, ଖଜଣା ଆଦାୟ ହୋଇପାରିବ ନାହିଁ । ଫଳରେ ଶାସନ ପଙ୍ଗୁ ହୋଇଯିବ । ବକ୍‌ସିଙ୍କ ଏହି ବ୍ୟବସ୍ଥା ବ୍ରିଟିଶ ଶାସକଙ୍କୁ ଦେଲା ମସ୍ତ ବଡ଼ ଧକ୍‌କା । ବକ୍‌ସି ଓ ଗରିଲା ବାହିନୀର ଲୁଚାଛପା ସଂଗ୍ରାମ ଲାଗିରହିବା ଫଳରେ ଏକପ୍ରକାର ଅରାଜକତା ସୃଷ୍ଟି ହେଲା । ପୁଣି ପାଇକମାନେ ସରକାରୀ ଅଫିସ ଓ ସଂସ୍ଥା ଉପରେ ତୁହାକୁତୁହା ଆକ୍ରମଣ କଲେ । ଥାନାଗୁଡ଼ାକ ପୋଡ଼ାଜଳା ହେଲା । ବ୍ରିଟିଶ ଶାସନ ପ୍ରାୟ ଭୁଶୁଡ଼ି ପଡ଼ିଲା ।

ଗରିଲା ରଣକୌଶଳ ନିର୍ଦ୍ଦେଶକ ବିଦ୍ରୋହୀ ନେତା ଜଗବନ୍ଧୁଙ୍କୁ ଗିରଫ କରି ଯଥୋଚିତ ଦଣ୍ଡ ଦେବାର ବ୍ୟବସ୍ଥା ସରକାର କଲେ । ସଂଗ୍ରାମ ଆରମ୍ଭ ହେବା ମାତ୍ରେ ବକ୍‌ସିଙ୍କୁ ଧରାଇଦେଲେ ୫୦୦୦ଟଙ୍କା ମିଳିବାର ଘୋଷଣା କରାଯାଇଥିଲା । ତାହା କିନ୍ତୁ ଫଳବତୀ ହୋଇ ନ ଥିଲା । ଧରିବା ତ ଦୂରର କଥା, ବକ୍‌ସିଙ୍କୁ ଠାବ କରିବା କଷ୍ଟକର ହୋଇପଡ଼ିଥିଲା । ତା'ର କାରଣ ଥିଲା ଜଗବନ୍ଧୁଙ୍କ ଅସମ୍ଭବ ଜନପ୍ରିୟତା । ଖୋରଧା ଅଧିବାସୀଙ୍କର ତାଙ୍କ ପ୍ରତି ଅଟଳ ବିଶ୍ୱାସ ଓ ସମ୍ମାନ ଥିଲା । ସେମାନେ ବକ୍‌ସିଙ୍କ ସୁରକ୍ଷା ପ୍ରତି ଦୃଷ୍ଟି ଦେଉଥିଲେ । ଇଂରେଜମାନଙ୍କର ତାଙ୍କ ରହିବା ସ୍ଥାନ ଉପରେ ଚଢ଼ାଉ ହେବାର ପୂର୍ବରୁ ତାଙ୍କୁ ଗୋପନରେ ସତର୍କ କରାଇ

ଦେଉଥିଲେ । ଏ ସମ୍ପର୍କରେ ଜଣେ ବ୍ରିଟିଶ ସାମରିକ ଅଫିସର ଲେଖିଛନ୍ତି – ''ଜଗବନ୍ଧୁ ତଥାପି ଖୋରଧାବାସୀଙ୍କ ଉପରେ ପ୍ରଭାବ ଜାରି ରଖିଛନ୍ତି ଓ ଚାଲିଥିବା ବିଶୃଙ୍ଖଳା ତାଙ୍କର ଚକ୍ରାନ୍ତ ବା ପ୍ରୋତ୍ସାହନ ପ୍ରଣୋଦିତ ।''

କ୍ରମେ ଇଂରେଜ ପ୍ରଶାସକମାନେ ତାଙ୍କୁ ଧରିବା ଦୁରୂହ ବ୍ୟାପାର ବୋଲି ଜାଣିପାରିଲେ । ଏହାପରେ ସେମାନେ ତାଙ୍କୁ ଦୁଇଟି ସର୍ତ୍ତରେ କ୍ଷମା ଦିଆଯିବ ବୋଲି ଘୋଷଣା କଲେ । ମାତ୍ର ବକ୍‌ସିଙ୍କ ଧୈର୍ଯ୍ୟଶକ୍ତି ଓ ମନୋବଳ ଏପରି ଦୃଢ଼ ଥିଲା ଯେ ସେ ଏହି ଘୋଷଣାପ୍ରତି ଭ୍ରୂକ୍ଷେପ କରି ନ ଥିଲେ । ବକ୍‌ସିଙ୍କ ଆତ୍ମସମର୍ପଣପାଇଁ ଇଂରେଜ ପ୍ରଶାସକମାନେ ଆଉ ଏକ ଅଭିନବ ପନ୍ଥା ଗ୍ରହଣ କଲେ । ତାହା ଥିଲା ତାଙ୍କର ପରିବାରକୁ – ଯେଉଁମାନେ ସଂଗ୍ରାମରେ କୌଣସି ପ୍ରକାରେ ଅଂଶ ଗ୍ରହଣ କରିଥିଲେ – ବନ୍ଦୀ କରି ରଖିବା । ତଦନୁଯାୟୀ ବକ୍‌ସିଙ୍କ ଦୁଇ ପତ୍ନୀ, ଦୁଇ ପୁତ୍ର, କନ୍ୟା, ଚାକର ପ୍ରଭୃତିଙ୍କୁ ବାରବାଟୀ ଦୁର୍ଗରେ ଅଟକ କରି ରଖାଗଲା । ଏହା ମଧ୍ୟ ଜଗବନ୍ଧୁଙ୍କୁ ବିଚଳିତ କରି ନ ଥିଲା । ଶେଷରେ ତାଙ୍କ ସମ୍ପତ୍ତି ମଧ୍ୟ ବାଜ୍ୟାପ୍ତ ହେଲା । ତଥାପି ଜଗବନ୍ଧୁ ତାଙ୍କ ଭୀଷ୍ମ ପ୍ରତିଜ୍ଞାରୁ ଟଳି ନ ଥିଲେ । କେତେକ ବିଶ୍ୱସ୍ତ ଅନୁଚରଙ୍କ ସହ ସେ ଘୋର ଅରଣ୍ୟମାନଙ୍କରେ ରହି ସଂଗ୍ରାମ ଚଳାଇଥିଲେ ।

ଜଗବନ୍ଧୁଙ୍କୁ ଗିରଫ କରିବାରେ ବିଫଳତା ବ୍ରିଟିଶ ସରକାରଙ୍କ ମନରେ ଘୋର ନୈରାଶ୍ୟ ସୃଷ୍ଟି କଲା । ବ୍ରିଟିଶ ସୈନ୍ୟବାହିନୀ, ଗୁଇନ୍ଦା ବିଭାଗ ଓ ରାଜନୀତିକ ପ୍ରଭାବ ସବୁ ଜଗବନ୍ଧୁଙ୍କ ଆଗରେ ହାର ମାନିଲା । ଇଂରେଜ ସରକାର ମଧ୍ୟ (ଜଗବନ୍ଧୁ ପଦାରେ ରହିବାରୁ) କ୍ଷତିଗ୍ରସ୍ତ ହେଲେ । ବହୁ ସ୍ଥାନରେ ସୈନ୍ୟ ମୁତୟନ କରିବାକୁ ପଡ଼ିଲା । ସେମାନଙ୍କୁ ସବୁ ଅବସ୍ଥାରେ ସଜାଗ କରି ରଖିବା ମଧ୍ୟ କଷ୍ଟସାଧ ହୋଇପଡ଼ିଲା । ପୁଣି ପ୍ରଶାସନିକ ବ୍ୟବସ୍ଥାକୁ ସବୁ ସମୟରେ ଦୃଢ଼ ରଖିବା ଯୋଗୁଁ ଅଧିକ ଖର୍ଚ୍ଚ କରିବାକୁ ପଡ଼ିଲା । ଏଥିରୁ ତେଣୁ ଉଦ୍ଧାର ପାଇବାକୁ ଜଗବନ୍ଧୁଙ୍କ ପ୍ରତି କଠୋର ମନୋବୃତ୍ତିକୁ ପରିହାର କରି ଏକ ଉଦାର, ଦୟାଳୁ ଓ ପ୍ରତିଶୋଧପରାୟଣତାବିହୀନ ନୀତି ପ୍ରୟୋଗ କରିବାକୁ ବ୍ରିଟିଶ ସରକାର ଏକରକମ ବାଧ ହେଲେ । ଶେଷରେ ବିନା ସର୍ତ୍ତରେ କ୍ଷମା ଦେଇ ଓ ମାସିକ ଭତ୍ତା ବରାଦ କରି ଜଗବନ୍ଧୁଙ୍କୁ ଆତ୍ମସମର୍ପଣ କରିବାକୁ ପ୍ରବର୍ତ୍ତାଇବାପାଇଁ ଉଦ୍ୟମ ଚଳାଇଲେ । ମାତ୍ର ଜଗବନ୍ଧୁ ଖୋରଧା ରାଜାଙ୍କୁ ରାଜ୍ୟ ଫେରାଇବା ସର୍ତ୍ତ ରଖିବାରୁ ଏହା ଇଂରେଜମାନଙ୍କ ଗ୍ରହଣଯୋଗ୍ୟ ହେଲା ନାହିଁ ।

ବ୍ରିଟିଶ ସରକାରଙ୍କ ସଙ୍ଗେ ସଂଘର୍ଷରେ ଦୀର୍ଘ କାଳ ଲିପ୍ତ ରହିବା ଫଳରେ ଜଗବନ୍ଧୁ କ୍ଳାନ୍ତ ହୋଇପଡ଼ିଥିଲେ । ତାଙ୍କର ଅନୁଗାମୀମାନେ ଧରାପଡ଼ି ଦଣ୍ଡିତ

ହୋଇଥିଲେ । ଅଥବା ରାଜକ୍ଷମା ପାଇ ସଂଘର୍ଷ ଭଳି କଣ୍ଟକିତ ପଥରୁ ଦୂରେଇ ଯାଇଥିଲେ । ଲୋକ ସମର୍ଥନ ମଧ୍ୟ ହ୍ରାସ ପାଉଥିବା ସେ ଲକ୍ଷ୍ୟ କରିଥିଲେ । ଶେଷରେ ବ୍ରିଟିଶ କର୍ତ୍ତୃପକ୍ଷ ନୟାଗଡ଼ ରାଜାଙ୍କ ଉପରେ ଏହାର ସମାଧାନ କରିବାକୁ ଚାପ ପକାଇଲେ । ରାଜା ତେଣୁ ଆଉ ବକ୍‌ସି ଜଗବନ୍ଧୁଙ୍କୁ ସାହାଯ୍ୟ କରିବାର ବାଟ ନ ଥିଲା । ସେ ମଧ୍ୟ ରାଜିନାମା ନ ହେଲେ ନୟାଗଡ଼ ରାଜାଙ୍କର କ୍ଷତି ହେବ ବୋଲି ହୃଦୟଙ୍ଗମ କଲେ । ସବୁବେଳେ ସାହାଯ୍ୟ ଓ ସମର୍ଥନ ଦେଇ ଆସୁଥିବା ବନ୍ଧୁଙ୍କୁ ବିପଦରେ ନ ପକାଇବା ଜଗବନ୍ଧୁଙ୍କ ବନ୍ଧୁବତ୍ସଳତାର ମଧ୍ୟ ପ୍ରମାଣ ଦିଏ । ଶେଷରେ ସେ ଇଂରେଜ ସରକାରଙ୍କ ସହ ଆପୋସୀ ରାଜିନାମା କରିବାକୁ ରାଜି ହେଲେ ।

ଜଗବନ୍ଧୁଙ୍କୁ ପ୍ରତି ଇଂରେଜ କର୍ତ୍ତୃପକ୍ଷ ମଧ୍ୟ ବିଜେତାର ମନୋଭାବ ଦେଖାଇ ନ ଥିଲେ । ତାଙ୍କୁ ସସମ୍ମାନେ ହସ୍ତୀ ପୃଷ୍ଠରେ ବସାଇ କଟକ ଅଣାଗଲା । ତାଙ୍କୁ ଗିରଫ କରାଯାଇ ନ ଥିଲା କି ମୃତ୍ୟୁଦଣ୍ଡ ଦିଆଯାଇ ନ ଥିଲା । ମହାନଦୀ କୂଳସ୍ଥ ଏକ ଗୃହ ନିଆଯାଇ ତାଙ୍କ ରହିବାର ବ୍ୟବସ୍ଥା ହେଲା । ଚଳାଚଳିପାଇଁ ମାସିକ ବୃତ୍ତି ମଧ୍ୟ ଖଞ୍ଜାଗଲା । ବିନାନୁମତିରେ କଟକ ଛାଡ଼ିବା ବ୍ୟତୀତ ଆଉ କୌଣସି କଟକଣା ରଖାଯାଇ ନ ଥିଲା । ବକ୍‌ସିଙ୍କ ମୃତ୍ୟୁପରେ ତାଙ୍କ ସମ୍ପତ୍ତିକୁ ତାଙ୍କ ପୁତ୍ରଙ୍କୁ ଫେରାଇ ଦିଆଯାଇଥିଲା ।

ଜଗବନ୍ଧୁଙ୍କର ଜନ୍ମଭୂମିକୁ ଉଦ୍ଧାର କରିବା ଚେଷ୍ଟା ବିଫଳ ହେଲା ସତ, ମାତ୍ର ଇଂରେଜମାନଙ୍କୁ ଏହି ରାଜ୍ୟରୁ ତଡ଼ିବାପାଇଁ ତାଙ୍କର ଉଦ୍ୟମ ଓଡ଼ିଶା ଇତିହାସରେ ତାଙ୍କୁ ମହାନ୍ କରି ରଖିଛି । ଏହା ମଧ୍ୟ ତାଙ୍କର ପରମ ଶତ୍ରୁ ବ୍ରିଟିଶ କର୍ତ୍ତୃପକ୍ଷ ସ୍ୱୀକାର କରିଛନ୍ତି । ତତ୍କାଳୀନ ବ୍ରିଟିଶ କମିସନର କେର୍ ଚିଫ୍ ସେକ୍ରେଟେରୀଙ୍କୁ ଯାହା ଲେଖିଥିଲେ – ''ଓଡ଼ିଶାରୁ ଇଂରେଜମାନଙ୍କୁ ବହିଷ୍କାର କରିବାକୁ ଯେତେଦୂର ଅସଙ୍ଗଠିତ ଭାବେ ହେଉ ପଛକେ – ଏହି ଆନ୍ଦୋଳନର କାର୍ଯ୍ୟାନୁଷ୍ଠାନପାଇଁ ଜଗବନ୍ଧୁ ନେତୃତ୍ୱ ନେଇଥିଲେ । ସେ ଆଶା ପୋଷଣ କରିଥିଲେ ଯେ ଯେହେତୁ ଇଂରେଜ କୁଶାସନରେ ଜନସାଧାରଣ ଓ ଓଡ଼ିଆ ମୁଖ୍ୟମାନେ ନିଷ୍ପେଷିତ ହୋଇ ସେମାନଙ୍କର ସ୍ୱାଧୀନତା ହରାଇଛନ୍ତି; ତେଣୁ ସେମାନେ ମିଳିମିଶି ଏକଜୁଟ ହୋଇ ତାଙ୍କ ନେତୃତ୍ୱ ଅନୁସରଣ କରି ବିଦେଶୀ ଶକ୍ତି କବଳରୁ ମାତୃଭୂମିକୁ ରକ୍ଷା କରିବେ... ।''

ଆଉ ଜଣେ ବ୍ରିଟିଶ ସାମରିକ ଅଫିସର ବିଦେଶୀ କବଳରୁ ମାତୃଭୂମିକୁ ଉଦ୍ଧାର କରିବାପାଇଁ ଆପ୍ରାଣ ଚେଷ୍ଟାକୁ ତାରିଫ କରି ଲେଖିଛନ୍ତି – ''ସେ (ଜଗବନ୍ଧୁ) ଜଣେ ଯଶସ୍ୱୀ ବ୍ୟକ୍ତି ହିସାବରେ ଖ୍ୟାତି ଅର୍ଜନ କରିସାରିଛନ୍ତି ଏବଂ ଦୁର୍ଭାଗ୍ୟବଶତଃ ସେହି ଯଶ ବହୁକାଳ ଧରି ଓଡ଼ିଶା ଇତିହାସରେ ରହିବ ... ।''

ପ୍ରାୟ ଦୁଇ ଶହ ବର୍ଷ ବିତିଗଲେ ମଧ୍ୟ ଜଗବନ୍ଧୁଙ୍କ ଯଶଗୌରବ ଦୀପ୍ତିମାନ୍ ହୋଇ ରହିଛି, ରହିଥିବ ମଧ୍ୟ ଯୁଗ ଯୁଗ ଧରି ।

---